

# ସ୍ମୃତି ତର୍ପଣ

ଡାକ୍ତର ବୈଦ୍ୟନାଥ ମିଶ୍ର

ଆବିର୍ଭାବ - ୨ ଅକ୍ଟୋବର ୧୯୪୨, ତିରୋଭାବ - ୯ ଡିସେମ୍ବର ୧୯୮୯

# ସ୍ମୃତି ତର୍ପଣ

## ଡାକ୍ତର ବୈଦ୍ୟନାଥ ମିଶ୍ର

ଆବିର୍ଭାବ— ୨ ଅକ୍ଟୋବର ୧୯୪୨

ତିରୋଭାବ— ୯ ଡିସେମ୍ବର ୧୯୮୯

ସଂପାଦନା :-- ପ୍ରଫେସର ଗୌରୀକୁମାର ବ୍ରହ୍ମା

ପ୍ରକାଶକ :– ପ୍ରଫେସର ଶିତିକଣ୍ଠ ମିଶ୍ର

ସ୍ମୃତି ତର୍ପଣ
ଡଃ ବୈଦ୍ୟନାଥ ମିଶ୍ର

ପ୍ରଚ୍ଛଦ :— ସୁଧାକର ବିଶ୍ୱାଳ

ମୁଦ୍ରଣ :— ୟୁନିଭଇଜ ପ୍ରେସ୍
୬୧୯, ଶହୀଦ ନଗର
ଭୁବନେଶ୍ୱର

ମୂଲ୍ୟ :— ସର୍ଗତ ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|
| ଡାକ୍ତର ବୈଦ୍ୟନାଥ ମିଶ୍ର- ଏକ ଅମ୍ଳାନ ପ୍ରତିଭା | | ୧ |
| ଅନୁସ୍ମରଣମ୍ | ପ୍ରଫେସର ଗୌରୀ କୁମାର ବ୍ରହ୍ମା | ୧୩ |
| ମୁଗ୍ଧବୋଧର ବୈଦ୍ୟନାଥ | ଶ୍ରୀ ହରିହର ବାହୁବଳପତି | ୧୬ |
| ପ୍ରୀତି ଅର୍ଘ୍ୟ | ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ | ୧୮ |
| ଅଶ୍ରୁଳ ଶ୍ରଦ୍ଧାଞ୍ଜଳି | ଡଃ ଜଗନ୍ନାଥ ମିଶ୍ର | ୧୯ |
| ଅଭୁଲା ସ୍ମୃତି | ଡଃ ଗୁଣନିଧି ଭୂୟାଁ | ୨୩ |
| ସହପାଠୀ ବୈଦ୍ୟନାଥ | ପ୍ରଫେସର ଗଣେଶ୍ୱର ମିଶ୍ର | ୨୫ |
| ଭକ୍ତି ଅର୍ଘ୍ୟ | ଶ୍ରୀମତୀ ପ୍ରମିଳା ମିଶ୍ର | ୨୬ |
| ଶେଷ ଦେଖା | ଡଃ ସେବା ମହାପାତ୍ର | ୩୦ |
| ସ୍ମରଣା | ଡଃ ରେଣୁ ମହାନ୍ତି | ୩୪ |
| ଭୁଲି ହୁଏନା | ଅଧ୍ୟାପକ ଡଃ ଗୋପୀନାଥ ମହାପାତ୍ର | ୩୮ |
| ସ୍ୱପ୍ନାର ସୀମା ନାହିଁ | ଶ୍ରୀ ଉମାକାନ୍ତ ମହାପାତ୍ର | ୪୫ |
| ବାଲ୍ୟବନ୍ଧୁ ବୈଦ୍ୟନାଥ | ଶ୍ରୀ ଶିବ କୁମାର ଦାସ ଚୌଧୁରୀ | ୪୮ |
| ଘର ବାହୁଡ଼ା | ଅଧ୍ୟାପକ କୃଷ୍ଣ କୁମାର ପଟ୍ଟନାୟକ | ୪୯ |
| ଭକ୍ତ୍ୟାଞ୍ଜଳି | ଶ୍ରୀ ଅଲେଖ ଚରଣ ମହାରଣା | ୫୧ |
| ବଇଦା ପାଖକୁ ଅନ୍ତିମ ଚିଠି | ଶ୍ରୀ ରମାବଲ୍ଲଭ ମିଶ୍ର | ୫୬ |
| ଅମର ଜ୍ୟୋତି | ଶ୍ରୀମତୀ ପ୍ରମିଳା ଆଚାର୍ଯ୍ୟ | ୫୯ |

| ବିଷୟ | | ପୃଷ୍ଠା |
|---|---|---|

ସ୍ତ୍ରୀ ଓ ପ୍ରସୂତି ରୋଗ ବିଶେଷଜ୍ଞ ସମ୍ମିଳନୀରେ ଡଃ ମିଶ୍ର



ଅପରେସନ ଟେବୁଲରେ ଡଃ ମିଶ୍ର



୧୯୬୪ ଛାତ୍ର ଆନ୍ଦୋଳନ ସମୟରେ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଗୁଲଜାରୀଲାଲ ନନ୍ଦାଙ୍କ
ଆଲୋଚନାରତ ଡଃ ମିଶ୍ର



ସହଧର୍ମିଣୀ ଡଃ ହେମଲତା ମଣ୍ଡୁ ଙ୍କ ସହ

# ଶ୍ରଦ୍ଧାଞ୍ଜଳି

ଯାହାଙ୍କୁ ସିଏ ଦେଇଥିଲେ, ତାଙ୍କୁ ସେ ନେଇଗଲେ । ଏଥିରେ କାହାର କିଛି କହିବାର ନାହିଁ । ଚର ଏବଂ ଅଚର, ସମସ୍ତେ ହେଉଛନ୍ତି "ଏକାୟନ"—ଏହାହିଁ ଭାଗବତ ଅନ୍ତର୍ଗତ ବ୍ରହ୍ମସ୍ତବର ସୁମହାନ୍ ସନ୍ଦେଶ । ତଥାପି, ରକ୍ତ ମାଂସ ଶରୀରଧାରୀ ଜୀବାତ୍ମା ଏହି ଆର୍ଷ ସିଦ୍ଧାନ୍ତ ଦ୍ୱାରା ପ୍ରଭାବିତ ହୋଇ, ପ୍ରିୟଜନ ବିଯୋଗବେଳେ ନିଜକୁ ଆଶ୍ୱସ୍ତ କରିପାରେ ନାହିଁ । କାଳିଦାସଙ୍କ ଅମର କାବ୍ୟ ରଘୁବଂଶରେ ଇନ୍ଦୁମତୀଙ୍କର ଅକାଳ ବିଯୋଗ ସହିତ ରାଜାଙ୍କର କରୁଣ ବିଳାପ ବର୍ଣ୍ଣିତ ହୋଇଛି । ଯଦି କେହି ସେତେବେଳେ ମହାରାଜା ଅଜଙ୍କୁ ପଚାରି ଥାଆନ୍ତା—"ଆପଣ ଏଡ଼େ ବିଜ୍ଞ ଓ ପଣ୍ଡିତ ହୋଇ, ପ୍ରିୟାର ମରଣରେ ଅଶ୍ରୁପାତ କରୁଛନ୍ତି କାହିଁକି ?" ଆମ ଭିତରୁ ପ୍ରତ୍ୟେକେ ଦିନେ ନା ଦିନେ ପ୍ରିୟଜନ-ବିଯୋଗ ହେତୁ ନିଶ୍ଚିତ ଭାବରେ ବିଳାପ କରିଥିବା କିମ୍ବା ବିଳାପ କରିବାକୁ ବାଧ୍ୟ ହେବା । ନର ଦେହରେ ଜଘନ୍ୟ ପଶୁତ୍ୱର ସଂସ୍କାର ନଥିଲେ, ପ୍ରିୟଜନ ବିଯୋଗରେ ଦୁଃଖ ସମ୍ବରଣ କରିବାକୁ କେହି ହେଲେ ସମର୍ଥ ହେବ ନାହିଁ । ତେଣୁ, ପରମ ଜ୍ଞାନୀ ଅଜ ମହାରାଜା ଯେତେ-ବେଳେ ବିଳାପ କରିଛନ୍ତି, ମାନବିକତାର ମହାମନ୍ତ୍ର ପ୍ରଚାରକ କାଳିଦାସ ତାଙ୍କ ପ୍ରତି ସମ୍ବେଦନଶୀଳ ହୋଇ କହିଛନ୍ତି—

"ଅଭିତପ୍ତମୟୋଽପି ମାର୍ଦ୍ଦବଂ
ଭଜତେ କୈବ କଥା ଶରୀରିଷୁ" ।

ଏହାର ଅର୍ଥ—"ହେ ପାଠକ ! ଅଜ ମହାରାଜାଙ୍କ ପରି ଧୀର ପୁରୁଷଙ୍କ ଆଖିରେ ଲୋତକ ପ୍ରବାହ ଦେଖି ତୁମେ ଯାହା ଭାବୁଛ, ତାହାର ଉତ୍ତର ମୁଁ ଦେଉଛି ଶୁଣ—"ତୁମେ ତ ଜାଣ, ଲୁହା କେତେ

ଚାଣ । କିନ୍ତୁ ଯେତେବେଳେ ତା ଭିତରେ ଅଗ୍ନି ପ୍ରବେଶ କରେ, ସେତେବେଳେ ସେହି ଲୁହା ମଧ୍ୟ ପାଣି ପରି ଟପ ଟପ ହୋଇ ତଳକୁ ଖସିଯାଏ । ମଣିଷ ଦେହଟା କ'ଣ ଲୁହାଠାରୁ ଅଧିକ କଠିନ କିମ୍ବା କଠୋର କି ? ତେଣୁ ଦେହ ଭିତରେ ଯେତେବେଳେ ପ୍ରିୟଜନ ବିଯୋଗର ଅଗ୍ନି ବା "ସନ୍ତାପ" ପ୍ରବେଶ କରେ, ସେତେବେଳେ ଆଖିରୁ ଟପ ଟପ ହୋଇ ଲୁହ ଝରିପଡ଼େ । ଏହାକୁ ବନ୍ଦ କରିବ କିଏ ?"

ବାସ୍ତବିକ୍, ପୃଥିବୀର ଚରମ ଓ ପରମ ସତ୍ୟ ହେଉଛି ଜନ୍ମ ଓ ମରଣ । ଅଥଚ, ଜନ୍ମରେ ଯେପରି ଆନନ୍ଦର ପ୍ରବାହ, ମରଣରେ ସେହିପରି ଶୋକର ଉଚ୍ଛ୍ୱାସ ବଳେ ବଳେ ଉଦ୍‌ଗତ ହୋଇଥାଏ । କିଏ କେଉଁଠାରୁ କାହିଁକି ଆସିଲା ଏବଂ କିଏ କେଉଁଠାକୁ କାହିଁକି ଗଲା, ଏହା ଜାଣିବା ପାଇଁ ସୃଷ୍ଟି ଆରମ୍ଭରୁ କୌଣସି ମନୁଷ୍ୟ ସମର୍ଥ ହୋଇ ନାହିଁ । କବିବର ରାଧାନାଥଙ୍କ ଭାଷାରେ—

"ଜନ୍ମ ମୃତ୍ୟୁ ଯେଉଁ ଗୁପ୍ତ ଦେଶେ ହେଉ
ଅଛି ସର୍ଜନା
ଥାଉ ଆନ ଛାଁ ପଶି ନ ପାରଇ
ଦେବ କଳ୍ପନା ।
ଦେବ ହେଲେ ସୁଦ୍ଧା ମୃତ୍ୟୁ ନିବାରଣେ
ନାହିଁ ଶକତି
ଜୀବନ ଯାହାକୁ ଭୋଳାନ୍ତି ସେ ଦିନା
ମୃତ୍ୟୁକୁ ଗତି ।"

ମୃତ୍ୟୁ କେତେବେଳେ ଆସିବ, ତାହା ମାନବ ବୁଦ୍ଧିର ଅଗୋଚର ।

ସୁପ୍ରସିଦ୍ଧ "ମହାଯାତ୍ରା" କାବ୍ୟର ଭାଷାରେ—

"ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ
ମାଟିର ଏ ଘଟ ନଷ୍ଟେ ମିଶିବ ମାଟିରେ
ସର୍ବହର କାଳ, ମହାବଳୀ ଠାରୁ ବଳୀ
ଅଦ୍ଭୁତ ସେ ଶୌର ତାକୁ ବେଢ଼ିଥିଲେ ତୋରଣ
ପାଚେରୀ ଲଙ୍ଘିଣ ପୁରେ ପଶେ ଅନାୟାସେ
ତାଳକ-କୀଳତ ଗୃହେ ପଶେ ଅକୁଣ୍ଠିତେ
ନ ଫିଟାଇ ସେ କବାଟ ଖଣ୍ଡ ଶିରୋମଣି ।"

ତେଣୁ, ହେ ବୈଦ୍ୟନାଥ ବାବୁ, ଆପଣଙ୍କର ଅଗଣିତ ବନ୍ଧୁ ଆପଣଙ୍କର ଯେତେ ନିକଟତମ ହେଲେ ମଧ୍ୟ, ଆପଣଙ୍କ ଇହଲୀଳାର ସମ୍ବରଣ ସମ୍ପର୍କରେ ଏକାନ୍ତ ଅସମର୍ଥ ଥିଲେ । ପୃଥିବୀର ଧର୍ମଗୁରୁମାନେ କହିଅଛନ୍ତି, ମନୁଷ୍ୟ ଇହ ଜନ୍ମରେ ଯେଉଁଭଳି କର୍ମ କରିଥାଏ, ଦେହ ତ୍ୟାଗ ପରେ ତଦନୁରୂପ ଫଳଭୋଗ କରିଥାଏ । ଜଣେ ଆଦର୍ଶ ଚିକିତ୍ସକର ସେବାମୟ ଜୀବନ ବରଣ କରି ଯେଉଁ ସତ୍କୀର୍ତ୍ତି ସମ୍ପାଦନ କରି ଅଛନ୍ତି, ତାହା ବଳରେ ପରଲୋକରେ ଆପଣଙ୍କର ସଦ୍‌ଗତି ଲାଭ ଅବଶ୍ୟମ୍ଭାବୀ ।

ଗଙ୍ଗାଧର ମେହେରଙ୍କ ଭାଷାରେ—

"ଜନ୍ମି ଥିଲା ବୋଲି ମରଣ ଲଭିଲା
ଜନମିବ ସେହିପରି,
ଦେଲା ଯାହା ଯାହା ଜନ୍ମାନ୍ତରେ ତାହା
ଭଣ୍ଡାରେ ରହିବ ଭରି ।

ଅତଏବ, ଶ୍ରୀମଦ୍‌ଭଗବତ ଗୀତାର ମହାବାଣୀ—"ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ" ଅନୁସରଣ କରି ଆମ୍ଭେମାନେ ଆପଣଙ୍କର

ସେବାମୟ ଜୀବନର ମଧୁର ସ୍ମୃତିପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ ଦ୍ୱାରା ହିଁ ଆଶ୍ୱସ୍ତ ରହୁଛୁ । ଯାହାପାଇଁ ଉପାୟ ନାହିଁ, ପ୍ରତିବିଧାନ ନାହିଁ ବା ପ୍ରତିକାର ନାହିଁ, ତାହାର ଅନୁସ୍ମରଣରେ ଆଶ୍ୱସ୍ତି ହେଉଛି ଏକମାତ୍ର ପନ୍ଥା । ତଥାପି ମାନବ ସୁଲଭ ସମ୍ବେଦନଶୀଳତାରେ ଅନ୍ତରକୁ ପରିପ୍ଳୁତ କରି ଆବେଗଭରା ଶ୍ରଦ୍ଧାଞ୍ଜଳି ହିଁ ଅର୍ପଣ କରୁଅଛୁ ।

॥ ଇତି ॥

ଗୌରୀ କୁମାର ବ୍ରହ୍ମା

## "ଡାକ୍ତର ବୈଦ୍ୟନାଥ ମିଶ୍ର" ଏକ ଅମ୍ଳାନ ପ୍ରତିଭା

"ଡାକ୍ତର ବୈଦ୍ୟନାଥ ମିଶ୍ର"ଙ୍କ ଜୀବନୀକୁ ବିଶ୍ଳେଷଣ କରିବାକୁ ଗଲେ ଆଖି ଆଗରେ ଉପସ୍ଥିତ ହୁଏ ବ୍ୟକ୍ତିତ୍ୱର ଏକ ବିରାଟ ବଟବୃକ୍ଷ। ତାହାର ମୂଳ ଓ ଚୂଳ ଅବଧାରଣ କରିବା ଏକାନ୍ତ କଷ୍ଟସାଧ୍ୟ। ନିଜ ନାମର ଔଚିତ୍ୟ ପ୍ରତିପାଦନ କରିବା ଦିଗରେ ଡକ୍ଟର ମିଶ୍ର ଥିଲେ ଅନ୍ୱର୍ଥନାମା। ରୁଗ୍‌ଣ, ଅସହାୟମାନଙ୍କ ପାଇଁ ତାଙ୍କର ଦ୍ୱାରଥିଲା ଖୋଲା ଉନ୍ମୁକ୍ତ। କାଳର ନିଷ୍ଠୁର ଉପହାସ ଦ୍ୱାରା ତାଙ୍କର ଅକାଳବିୟୋଗ ଘଟିବାରୁ ପରିବାର, ଆତ୍ମୀୟସ୍ୱଜନ, ଗ୍ରାମବାସୀ ତଥା ଅଗଣିତ ବନ୍ଧୁଙ୍କ ପାଇଁ ସୃଷ୍ଟି ହେଲା ଏକ ବିରାଟ ଶୂନ୍ୟସ୍ଥାନ। ମନେ ପଡେ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ ଲେଖିଥିବା କବିତା :—

"କାଙ୍ଗାଳଦେଶେ ଦେବତାଗୋଟାଏ ଆସିଥିଲା ପରା ସିଏ
ଶେଷେ କାନ୍ଦୁ କାନ୍ଦୁ ଚାଲି ଗଲା, ପଡ଼ିଲା ଏ ମାଟିଖାଲି
ଭରିବ ତା ଜାଗା କିଏ ?
କାଙ୍ଗାଳଦେଶେ............."

ଏହା ଆଜି ତାଙ୍କ ପାଇଁ ମଧ୍ୟ ପ୍ରଯୋଜ୍ୟ।

ଛିନ୍ନମସ୍ତା ଏପରିବାର ପାଇଁ ତାଙ୍କ ଜୀବନ କାହାଣୀ ଏକ ଅତୁଳନୀୟ ଆଦର୍ଶର ଦୀପସ୍ତମ୍ଭ ଭାବେ ସବୁଦିନ ଆଲୋକିତ କରିବ—ଏହା ବିଶ୍ୱାସ।

**ଗ୍ରାମ ପରିଚୟ** — ବହୁ ଯୋଗିଜନ୍ମାଙ୍କୁ ଜନ୍ମଦେଇ ଧନ୍ୟହୋଇଥିବା ପୁରୀଜିଲ୍ଲାର 'ବୀରନରସିଂହପୁର ଶାସନ' ଜଗନ୍ନାଥ ମନ୍ଦିରର 'ମାଦଳା-ପାଞ୍ଜି'ରେ ନିଜର ଅସ୍ତିତ୍ୱକୁ ଏକ ସ୍ୱତନ୍ତ୍ର ସ୍ଥାନ ଦେଇଛି। ଆଧୁନିକ ଓଡ଼ିଶାରେ ଏହା ଏକ ଆଦର୍ଶ ଗ୍ରାମ ଭାବରେ ସୁପରିଚିତ। ଉକ୍ତ ଗ୍ରାମରେ

ଡାକ୍ତର ବୈଦ୍ୟନାଥ ମିଶ୍ର ଜନ୍ମନେଇ ନିଜ ନାମକୁ ପ୍ରତିଷ୍ଠିତ କରିପାରିବା ସଙ୍ଗେ ସଙ୍ଗେ ନିଜ ଗ୍ରାମପାଇଁ ପ୍ରଶଂସା ଏବଂ ଗୌରବର କାରଣ ହୋଇପାରିଥିଲେ । ଗ୍ରାମ୍ୟ ଜୀବନ ଓ ନିଜ ଗ୍ରାମବାସୀମାନଙ୍କ ସୁଖଦୁଃଖ ସହିତ ନିଜକୁ ସାମିଲ କରିନେଇଥିବା ବ୍ୟକ୍ତିମାନଙ୍କ ଭିତରେ ସେ ଥିଲେ ଅନ୍ୟତମ । ଗ୍ରାମର ଭଲମନ୍ଦ ଏବଂ ପର୍ବପର୍ବାଣୀ ବିଶେଷ କରି ଶୀତଳଷଷ୍ଠୀ ଯାହାରେ ତାଙ୍କର ନିଶ୍ଚିତ ଉପସ୍ଥିତି ଏକ ସ୍ମରଣୀୟ ଘଟଣା । ଗୀରନର-ସିଂହପୁରର ଗ୍ରାମବାସୀ ବୋଲି ପରିଚୟ ଦେବାରେ ସେ ଗର୍ବ ଅନୁଭବ କରୁଥିଲେ, ଏକଥା ବହୁବାର ତାଙ୍କ ସହିତ ଆଲୋଚନାବେଳେ ଶୁଣିବାକୁ ମିଳୁଥିଲା । ଗାଁ ଥିଲା ତାଙ୍କପାଇଁ ଆନନ୍ଦ ଓ ପ୍ରେରଣାର ଉତ୍ସ । ଆଜି ତାଙ୍କର ଅସ୍ୱାଭାବିକ ଅନୁପସ୍ଥିତି ଗାଁରେ ଗଭୀର ଭାବରେ ଅନୁଭୂତ ହୁଏ ।

**ବଂଶ ପରିଚୟ**—ଡାକ୍ତର ବୈଦ୍ୟନାଥ ମିଶ୍ରଙ୍କ ବଂଶପରିଚୟ ଦେବାକୁ ହେଲେ ସେହି ବଂଶର ଆଉଜଣେ ବୈଦ୍ୟନାଥ ମିଶ୍ରଙ୍କଠାରୁ ଆରମ୍ଭ କରିବାକୁ ପଡ଼ିବ ।

ପୂର୍ବଜ ବୈଦ୍ୟନାଥ ମିଶ୍ରଙ୍କର ଜନ୍ମ ଏହି ଗୀରନରସିଂହପୁର ଗ୍ରାମର ଏକ ସମ୍ଭ୍ରାନ୍ତ ପରିବାରରେ । ବହୁ ସମ୍ପତ୍ତିର ଅଧିକାରୀ ସେହି ବୈଦ୍ୟନାଥ ମିଶ୍ର ଖୁବ୍ ସ୍ୱାସ୍ଥ୍ୟବାନ୍, ସୌମ୍ୟବପୁ ଓ ଧର୍ମପରାୟଣ ଥିଲେ । ତାଙ୍କ ସଂପର୍କରେ ଗୋଟିଏ କୌତୂହଳ ଜନକ କଥା ଗାଁର ବୟସ୍କ ବ୍ୟକ୍ତିମାନଙ୍କ-ଠାରୁ ଶୁଣିବାକୁ ମିଳେ—ଥରେ ମହାନବମୀ ଦିନ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ଦୁର୍ଗାଙ୍କ ସମ୍ମୁଖରେ ଶାନ୍ତିବଳି ପଡ଼ିସାରିବାପରେ, ବଳିଖଣ୍ଡ (ଗ୍ରେଟଖଣ୍ଡ)କୁ ବହୁଚେଷ୍ଟାକରି ତିନିଜଣ ସେବକ ଉପାଡ଼ି ପାରିନଥିଲେ । କିନ୍ତୁ ବୈଦ୍ୟନାଥ ମିଶ୍ରେ ଉପସ୍ଥିତ ଗ୍ରାମବାସୀଙ୍କ ସାଙ୍ଗରେ ଶ୍ରଦ୍ଧାର ସହ ତାକୁ ଧରି ଏକୁଟିଆ ତାହା ଉପାଡି ଦେଇଥିଲେ । ସେହିଦିନଠାରୁ ଅନେକ ବର୍ଷ ଧରି ପୂଜାପରେ ଖଣ୍ଡଟିକୁ ବୈଦ୍ୟନାଥ ମିଶ୍ରଙ୍କ ପରିବାରକୁ ପ୍ରଦାନ କରାଯାଉଥିଲା । ପଞ୍ଚଷଠୀ ବର୍ଷ ବୟସରେ ବୈଦ୍ୟନାଥ ମିଶ୍ର ସ୍ୱର୍ଗଗାମୀ ହୋଇଥିଲେ । ତାଙ୍କର ଏକମାତ୍ର ସନ୍ତାନ ଥିଲେ ପୁତ୍ର 'ପିତାମ୍ବର ମିଶ୍ର' ।

ପିତାମ୍ବର ମିଶ୍ର ମାତ୍ର ପଞ୍ଚଷଠି ବର୍ଷ ବୟସରେ ପରଲୋକ ଗମନ କରିଥିଲେ । ସେ ଥିଲେ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟାର ପିତା । ପୁତ୍ରଟିର ନାମଥିଲା 'ବାସୁଦେବ' ।

ବାସୁଦେବ ମିଶ୍ର ମାତ୍ର ଚଉଦ ବର୍ଷ ବୟସରେ ନିଜ ପିତାଙ୍କୁ ହରାଇ ଘରସଂସାରର ବୋଝ ନିଜ ମୁଣ୍ଡଉପରକୁ ନେଇଥିଲେ । ତାଙ୍କ ସମୟରେ ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା । ଉଦର ଜ୍ୱାଳାରେ ସେ ନିଜର ସମସ୍ତ ଜମିବାଡ଼ି ବନ୍ଧା କରିଦେବାପାଇଁ ବାଧ୍ୟ ହୋଇଥିଲେ । ତାଙ୍କର ତିନିଗୋଟି ପୁତ୍ର—ଗଙ୍ଗାଧର, ଅନନ୍ତ ଓ ବଳଭଦ୍ର । ବାସୁଦେବ ମିଶ୍ର ତେସ୍ତରି ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ ।

ପରିତାପର ବିଷୟ ଯେ, ପୁତ୍ର ଗଙ୍ଗାଧର ପିତା 'ବାସୁଦେବଙ୍କର' ଜୀବଦ୍ଦଶାରେହିଁ ମାତ୍ର ବୟାଳିଶି ବର୍ଷ ବୟସରେ ମହାମାରି ରୋଗରେ ମୃତ୍ୟୁବରଣ କରିଥିଲେ । ତାଙ୍କର ହରିହର, ଗଦାଧର ଓ ଗୋପାଳଚନ୍ଦ୍ର ନାମରେ ତିନିଜଣ ପୁତ୍ର ଥିଲେ । ଗଙ୍ଗାଧର ମିଶ୍ର ଥିଲେ କଠୋର ପରିଶ୍ରମୀ, ମିଷ୍ଟଭାଷୀ ତଥା ସତ୍ୟବାଦୀ । ବାଣ ତିଆରି କରିବାରେ ସେ ଅପୂର୍ବ ଦକ୍ଷତା ଲାଭ କରିଥିଲେ । ଶ୍ରୀ ନୀଳକଣ୍ଠ ଦେବଙ୍କର ଶୀତଳଷଷ୍ଠୀ ଉତ୍ସବ ଉପଲକ୍ଷେ ଗ୍ରାମବାସୀମାନେ ନିଜେ ପରିଶ୍ରମ କରି ବାଣ ତିଆରି କରିଥାଆନ୍ତି ।

ଗଙ୍ଗାଧର ମିଶ୍ରଙ୍କର ଦୁଇଭାଇଙ୍କ ମଧ୍ୟରେ ବଳଭଦ୍ର ମିଶ୍ର ଥିଲେ କନିଷ୍ଠ । ବଳିଷ୍ଠ ଓ ଦୀର୍ଘ ଶରୀର ବିଶିଷ୍ଟ ବଳଭଦ୍ର ଥିଲେ ବାଲ୍ୟାବସ୍ଥାରୁ ଖୁବ୍ କର୍ମଠ । ସେ ବିବାହ କରିଥିଲେ ନୀଳମଣି ଦେବୀଙ୍କୁ । ମାତ୍ର ଥିଲେ ନିଃସନ୍ତାନ । ତାଙ୍କ ବଡ଼ଭାଇ ଗଙ୍ଗାଧର ମିଶ୍ରଙ୍କ ଜ୍ୟେଷ୍ଠପୁତ୍ର ପଣ୍ଡିତ ହରିହର ମିଶ୍ରଙ୍କର ଥିଲେ ଦୁଇପୁତ୍ର—'ମୃତ୍ୟୁଞ୍ଜୟ' ଓ 'ଧନଞ୍ଜୟ' ଏବଂ ତିନିଗୋଟି କନ୍ୟା । ତାଙ୍କ ସ୍ତ୍ରୀଙ୍କ ନାମ ଥିଲା କମଳା ଦେବୀ । ବଳଭଦ୍ର ମିଶ୍ର ନିଃସନ୍ତାନ ଥିବାରୁ, ପୁତୁରା 'ହରିହର'ଙ୍କର ସାନପୁଅ ଧନଞ୍ଜୟଙ୍କୁ 'ଦତ୍ତପୁତ୍ର' ରୂପେ ଗ୍ରହଣ କରି ବ୍ରତ କରିଥିଲେ ଏବଂ ପୁତ୍ରର ନାମ ଧନଞ୍ଜୟ ପରିବର୍ତ୍ତେ ପୂର୍ବପୁରୁଷଙ୍କ ନାମାନୁଯାୟୀ 'ବୈଦ୍ୟନାଥ' ରଖିଥିଲେ । ଘରେ

ବୈଦ୍ୟନାଥଙ୍କୁ 'ବାପୁଜୀ' ବୋଲି ଡାକୁଥିଲେହେଁ ଆତ୍ମୀୟମାନେ ତାଙ୍କୁ ଧନୁ' (ଧନଞ୍ଜୟ) ବୋଲି ସମ୍ବୋଧନ କରନ୍ତି । ଅଠାଅଶୀ ବର୍ଷ ବୟସରେ ବଳଭଦ୍ର ମିଶ୍ର ସ୍ୱର୍ଗାରୋହଣ କରିଥିଲେ । ମୃତ୍ୟୁର ଦଶବର୍ଷ ପୂର୍ବରୁ ସେ ତାଙ୍କ ସ୍ତ୍ରୀ ମାଳମଣିଙ୍କୁ ହରାଇଥିଲେ । ଡାକ୍ତର ବୈଦ୍ୟନାଥଙ୍କ ପିତା ହରିହର ମିଶ୍ର ଜଣେ ପ୍ରବୀଣ ସଂସ୍କୃତ ପଣ୍ଡିତ ଥିଲେ ଏବଂ ଅଠସ୍ତରୀ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ ।

**ବାଲ୍ୟାବସ୍ଥା** –୧୯୪୨ ମସିହା ଅକ୍ଟୋବର ୨ ତାରିଖରେ (ଅର୍ଥାତ୍ ମହାତ୍ମାଗାନ୍ଧି ଏବଂ ଶାସ୍ତ୍ରୀଜୀଙ୍କ ଜନ୍ମଦିବସରେ) ଡାକ୍ତର ବୈଦ୍ୟନାଥ ମିଶ୍ର ଜନ୍ମଗ୍ରହଣ କରିଥିଲେ । ତାଙ୍କ ବ୍ୟକ୍ତିତ୍ୱର ମହାନତା ଉକ୍ତ ଅବସର ଏକ ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବନାହିଁ । ପିତା ପଣ୍ଡିତ ହରିହର ମିଶ୍ର ଥିଲେ ଗ୍ରାମ ହାଇସ୍କୁଲର ଜଣେ ଆଦର୍ଶ ଶିକ୍ଷକ । ପରିବାର ଥିଲା ନିମ୍ନ ମଧ୍ୟବିତ୍ତ । ପିଲାଦିନରୁ ବୈଦ୍ୟନାଥ ଥିଲେ ରୁଗ୍ଣ ଓ କ୍ଷୀଣଶରୀର । ମାତ୍ର ମନରେ ଭରିରହିଥିଲା ଅମାପ ଶକ୍ତି । ଆଗ୍ରହ ଥିଲା ତାଙ୍କର କଠୋର ଅଧ୍ୟବସାୟରେ । ପରିବାରର ଆର୍ଥିକ ଦୁର୍ବଳତା ତାଙ୍କୁ ଲକ୍ଷ୍ୟଚ୍ୟୁତ କରିପାରିନଥିଲା । ବାଲ୍ୟାବସ୍ଥାରୁହିଁ ଆତ୍ମସମ୍ମାନଜ୍ଞାନ ତାଙ୍କଠାରେ ପରିଲକ୍ଷିତ ହୋଇଥିଲା । ଫଳରେ ନିଜର ଅଥବା ପରିବାରର ଅଭାବ ଅସୁବିଧା ଅନ୍ୟ ଆଗରେ ପ୍ରକାଶ କରି କାହାର ସାହାଯ୍ୟ ଭିକ୍ଷୁ ହେବାପାଇଁ ସେ ଚାହିଁ ନ ଥିଲେ । ପିତାଙ୍କର ଶାନ୍ତସ୍ୱଭାବ ଓ ତପସ୍ୱୀ ସୁଲଭ ଗୁଣାବଳୀ ତାଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ପିଲାବେଳୁ ପିତାଙ୍କ ପରି ନିର୍ଦ୍ଦିଷ୍ଟ ରୁଚିର ସ୍ୱଳ୍ପଖାଦ୍ୟପେୟ ବି ତାଙ୍କର ପ୍ରବୃତ୍ତିର ଅଂଶବିଶେଷ ଥିଲା । ପ୍ରାୟ ସବୁଦିନ ସେ ମାଛ ଖାଉଥିଲେ ।

**ଛାତ୍ରଜୀବନ** – ପିଲାଦିନେ ରୁଗ୍ଣ ଥିବାରୁ ଏବଂ ବାପା ମାଙ୍କର କାଢ଼ପୋଛ ପୁଅ ହୋଇଥିବାରୁ ସାମାନ୍ୟ ବିଳମ୍ବରେ ସେ ପାଠପଢ଼ା ଆରମ୍ଭ କରିଥିଲେ । ଗାଁ ସ୍କୁଲରେ ଶିଶୁଶ୍ରେଣୀରେ ବିଦ୍ୟାରମ୍ଭ କରି ଷଷ୍ଠ ଶ୍ରେଣୀ ପର୍ଯ୍ୟନ୍ତ ସେଠାରେ ପଢ଼ିଥିଲେ । ପରେ ପିତାଙ୍କ ସହ ପରିବାରର ସମସ୍ତେ ପୁରୀକୁ ଚାଲିଯାଇ ହରଚଣ୍ଡୀ ସାହିରେ ଅବସ୍ଥାନ

କରିବାଦ୍ୱାରା ସେ ନିକଟସ୍ଥ "ଗଡ଼ଭଡ଼ବାଡ଼ ସାହି ସ୍କୁଲ"ରେ ନାମ ଲେଖାଇ ଚତୁର୍ଥ ଓ ପଞ୍ଚମ ଶ୍ରେଣୀର ପାଠ ସେଠାରେ ସମାପ୍ତ କରିଥିଲେ। ତାହାପରେ "ପୁରୀ ଭୋଳାନାଥ ବିଦ୍ୟାଳୟ (ହିନ୍ଦି ସ୍କୁଲ)"ରେ ଶେଷ ହେଲା ତାଙ୍କର ଷଷ୍ଠ ଓ ସପ୍ତମ ଶ୍ରେଣୀର ପାଠପଢ଼ା। ମାଇନର ପାସ୍ କରିବା ପରେ "ପୁରୀ ଜିଲ୍ଲା ସ୍କୁଲ"ରେ ଅଷ୍ଟମଠାରୁ ଏକାଦଶ ପର୍ଯ୍ୟନ୍ତ ସେ ପଢ଼ିଥିଲେ। ୧୯୫୯ ମସିହା ମାଟ୍ରିକ୍ ପରୀକ୍ଷାରେ ସେ ଜିଲ୍ଲାସ୍କୁଲରୁ ପ୍ରଥମ ଶ୍ରେଣୀରେ କୃତିତ୍ୱର ସହ ପାସ କରି ପରିବାରର ଶ୍ରୀବୃଦ୍ଧି କରିଥିଲେ। ପୂର୍ବରୁ ସେ ଭୋଳାନାଥ ସ୍କୁଲପାଇଁ ପ୍ରଥମ କରି ମାଇନର ବୃତ୍ତି ପାଇଥିଲେ। କ୍ଲାସରେ ସର୍ବଦା ସେ ପ୍ରଥମ ହେଉଥିଲେ।

ପରବର୍ତ୍ତୀ ଦୁଇବର୍ଷ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ସେ ବିଜ୍ଞାନ ପଢ଼ିଥିଲେ। ସେଠାରୁ ଆଇ. ଏସ୍. ସି. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରି ସ୍ୱଳ୍ପ ସମୟ ପାଇଁ ରେଭେନ୍ସା କଲେଜରେ ଇଂରାଜୀ ଅନର୍ସରେ ନାମ ଲେଖାଇଥିଲେ। ମାତ୍ର ତତ୍‌କାଳୀନ ଅଧ୍ୟକ୍ଷ, ସ୍ୱଗ୍ରାମବାସୀ ଡକ୍ଟର ସଦାଶିବ ମିଶ୍ରଙ୍କ ପ୍ରେରଣାରେ ସେ ଡାକ୍ତରୀ ପାଠ ପଢ଼ିବା ପାଇଁ କଟକର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଯୋଗଦେଇଥିଲେ। ୧୯୬୬ ମସିହାରେ ସମ୍ମାନର ସହ ପ୍ରଥମ ଶ୍ରେଣୀରେ ଏମ. ବି ବି. ଏସ୍ ପାସ୍ କରି ଡାକ୍ତର ଜୀବନ ଆରମ୍ଭ କରିଥିଲେ। ଚାକିରୀ ଜୀବନ ମଧ୍ୟରେ ପୁନଶ୍ଚ ଦୁଇବର୍ଷ (୧୯୭୩-୭୫) ସେ "ସ୍ତ୍ରୀରୋଗ" ବିଷୟରେ ଏମ. ଏସ୍. ଡିଗ୍ରୀ ନେବାପାଇଁ କଟକ ମେଡିକାଲ କଲେଜରେ ଯୋଗ ଦେଇଥିଲେ। ଛାତ୍ର ଜୀବନର ସଫଳତା ତାଙ୍କୁ ମିଳିଥିବା ଛାତ୍ରବୃତ୍ତି ଓ ପ୍ରଶଂସା ପତ୍ରରୁ ହିଁ ଜଣାଯାଏ।

**ଚାକିରୀ ଜୀବନ**--ଓଡ଼ିଶା ପବ୍ଲିକ ସର୍ଭିସ୍ କମିଶନଙ୍କ ପରୀକ୍ଷାରେ ପ୍ରଥମସ୍ଥାନ ଅଧିକାର କରି ଓଡ଼ିଶା ସରକାରଙ୍କ ସ୍ୱାସ୍ଥ୍ୟବିଭାଗରେ ସହକାରୀ ଡାକ୍ତର ଭାବେ ୧୯୬୭ ମସିହାରେ ସେ ଚାକିରୀଜୀବନ ଆରମ୍ଭ କରିଥିଲେ। "ସେବାହିଁ ପରମଧର୍ମଃ" ବୋଲି ଗ୍ରହଣକରି ସୁଦୂର ଭବାନୀପାଟଣାର ସରକାରୀ ଚିକିତ୍ସାଳୟରେ ଯୋଗଦେଇଥିଲେ। ବିଭିନ୍ନ

ସମୟରେ ସେ ଛତ୍ରପୁର, କେନ୍ଦ୍ରାପଡ଼ା, କଟକ, ପୁରୀ ଓ ସମ୍ବଲପୁରସ୍ଥିତ ସରକାରୀ ମୁଖ୍ୟ ଚିକିତ୍ସାଳୟମାନଙ୍କରେ ସହକାରୀ ସ୍ତ୍ରୀରୋଗ ବିଶେଷଜ୍ଞ ଚିକିତ୍ସକ ଭାବେ କାର୍ଯ୍ୟ କରିଥିଲେ । କାଳପାଶରେ ବାନ୍ଧହେବା ସମୟରେ ସେ ଦ୍ୱିତୀୟଥର ପାଇଁ ପୁରୀ ସରକାରୀ ମୁଖ୍ୟ ଚିକିତ୍ସାଳୟର ବରିଷ୍ଠ ସ୍ତ୍ରୀରୋଗ ବିଶେଷଜ୍ଞ ଭାବେ କାର୍ଯ୍ୟ କରୁଥିଲେ । ଚିକିତ୍ସକ ହିସାବରେ ତାଙ୍କ ଦକ୍ଷତାର ପରିଚୟ, ଅସହ୍ୟ ଯନ୍ତ୍ରଣାମୁକ୍ତ ଅଗଣିତ ରୋଗୀଙ୍କର ନୟନରୁ ଝରିପଡ଼ୁଥିବା ଆନନ୍ଦାଶ୍ରୁହିଁ ସାକ୍ଷ୍ୟଦିଏ । ଚିକିତ୍ସାସେବା ବ୍ୟତୀତ ସେ ସମୟକ୍ରମେ ପ୍ରଶାସନିକ ଦାୟିତ୍ୱକୁ ନିର୍ବାହ କରିପାରିଥିବା ତାଙ୍କ ସହକର୍ମୀ ଓ ସହଯୋଗୀମାନେ ସ୍ୱୀକାର କରନ୍ତି । ୨୨ ବର୍ଷର ପ୍ରଶଂସନୀୟ ଚିକିତ୍ସକର ଜୀବନ ତାଙ୍କ କୃତିତ୍ୱର ସାକ୍ଷ୍ୟ ପ୍ରଦାନ କରେ ।

**ସଂସାରକ୍ଷେତ୍ର**—୧୯୬୭ ମସିହାରେ ଚିକିତ୍ସାସେବାରେ ଯୋଗଦେବାସହ ଡାକ୍ତର ମିଶ୍ର ତାଙ୍କ ପାରିବାରିକ ଜୀବନର ସୂତ୍ରପାତ କରାଇଥିଲେ । କଟକ ଜିଲ୍ଲାର ଝଣ୍ଡସାହି ନିବାସୀ ସ୍ୱର୍ଗତ ପଣ୍ଡିତ ନାରାୟଣ ମିଶ୍ରଙ୍କ ଦ୍ୱିତୀୟା କନ୍ୟା ସୁଶ୍ରୀ ଡାକ୍ତର ହେମଲତାଙ୍କୁ ନିଜର ସହଧର୍ମିଣୀ ଓ ସହକର୍ମିଣୀ ଭାବେ ଗ୍ରହଣ କରିଥିଲେ । ଶ୍ରୀରାମଚନ୍ଦ୍ରଭଞ୍ଜ ମେଡ଼ିକାଲ କଲେଜର ଏହି ସହପାଠୀ ଯୁଗଳ ଦମ୍ପତିଜୀବନକୁ ମଧୁମୟ କରିବାପାଇଁ ପରସ୍ପରର ସହଯୋଗୀ ଏବଂ ପରିପୂରକ ଥିଲେ । ସହଧର୍ମିଣୀ ହେମଲତାଙ୍କର ଶ୍ରଦ୍ଧାନାମ "ଝୁନ୍ଦ୍ରି" ଥିଲେ ବି ଝଂଜା କେବେ ସେମାନଙ୍କ ଜୀବନଯାତ୍ରାରେ ରେଖାପାତ କରିନଥିଲା । ଆମ୍ଭମାନଙ୍କ ବୈଦ୍ୟନାଥ ସାଂସାରିକ ଜୀବନରେ ଥିଲେ ଜଣେ କର୍ମଯୋଗୀ ।

୧୯୬୮ ମସିହାରେ ବଡ଼ଝିଅ "ଜୁଲି"ର ଜନ୍ମ ତାଙ୍କ ସଂସାର କ୍ଷେତ୍ରର ପ୍ରଗତିକୁ ପ୍ରଥମ ପାହାଚରେ ପହଞ୍ଚାଇ ଥିଲା । ତିନିବର୍ଷ ପରେ ଦ୍ୱିତୀୟାକନ୍ୟା "ମିଲି"ର ଜନ୍ମ ପରିବାର ରଜ୍ଜୁକୁ ଅଧିକ ମଜବୁତ କରି ତୋଳିଥିଲା । ଆଜ ୧୯୭୮ ମସିହା ନିର୍ମଳ ଶରତର ଶାରଦୀୟ ବାତାବରଣ ସହ ପବିତ୍ର ମହାନବମୀ ତିଥିରେ ପୁତ୍ର ବିଭୁଦତ୍ତ (ପୁପୁନ)ର ଜନ୍ମ ତାଙ୍କ ପାରିବାରିକ ଜୀବନର ପୂର୍ଣ୍ଣତା ଆଣିଦେଇଥିଲା ।

ସ୍ତ୍ରୀଙ୍କ ସହ ତନୋଟି ସନ୍ତାନଙ୍କୁ ନେଇ ସେ ତାଙ୍କ ସଂସାରକୁ ସୁଖ, ଶାନ୍ତି ଓ ସମୃଦ୍ଧିରେ ଭରି ରଖିଥିଲେ । କିନ୍ତୁ ସେ ତାଙ୍କ ସଂସାରକ୍ଷେତ୍ରର ସୀମାରେଖାକୁ ଏତା ଭିତରେ ସୀମିତ ରଖି ନ ଥିଲେ । ସମୟର ସ୍ରୋତରେ ତାଙ୍କ ନିକଟକୁ ଆସିଥିବା ପ୍ରତ୍ୟେକଙ୍କୁ ସେ ପରିବାରର ଅନ୍ତର୍ଭୁକ୍ତ କରିନେଇଥିଲେ ଏବଂ ସମସ୍ତଙ୍କର ସୁଖ-ସମୃଦ୍ଧି ପାଇଁ ସହଯୋଗିତା କରୁଥିଲେ । ବିଶେଷକରି ତାଙ୍କର ବଡ଼ଭାଇ ମୃତ୍ୟୁଞ୍ଜୟ ମିଶ୍ରଙ୍କର ଅକାଳ ବିୟୋଗପରେ ଭାଇଙ୍କ ପିଲାମାନଙ୍କୁ ମଣିଷ କରିବାପାଇଁ ତାଙ୍କ ଅବଦାନ ଅତୁଳନୀୟ । ଏ ସଂସାରରେ ତାଙ୍କ ପରି ପୁତ୍ର, ଡାକ୍ତର, ପିତା, ସ୍ୱାମୀ ବନ୍ଧୁ ଅନେକ ଥାଇପାରନ୍ତି । ମାତ୍ର ତାଙ୍କ ପରି ଜଣେ ପିତୃବ୍ୟ ବିରଳ । ବଡ଼ଝିଅ ଜୁଲି ସମ୍ପ୍ରତି ଭୁବନେଶ୍ୱରସ୍ଥ ମହର୍ଷି ମହାବିଦ୍ୟାଳୟରେ ରାଜନୀତିବିଜ୍ଞାନ ଅଧ୍ୟାପିକା ରୂପେ ଅବସ୍ଥାପିତା । ସାନଝିଅ ମିଲି ସାମନ୍ତ ଚନ୍ଦ୍ରଶେଖର କଲେଜର ବି. ଏସ୍‌ସି ଛାତ୍ରୀ । ପୁଅ ପୁପୁନ୍ ପୁରୀ କନ୍‌ଭେଣ୍ଟ୍ ସ୍କୁଲରେ ସପ୍ତମ ଶ୍ରେଣୀରେ ପଢ଼ୁଛି ।

**ଅଭିରୁଚି ଏବଂ ପାରଦର୍ଶିତା**– ସେବାର ମନୋଭାବ ନେଇ ଜଣେ ଦକ୍ଷ ଚିକିତ୍ସକଭାବେ ପ୍ରତିଷ୍ଠା ଅର୍ଜନ କରିବା ତାଙ୍କର ଏକମାତ୍ର ଲକ୍ଷ୍ୟ ନ ଥିଲା । ସେ ଥିଲେ ଏକାଧାରରେ ଚିତ୍ରଶିଳ୍ପୀ, କବି, ନାଟ୍ୟକାର ସୁବକ୍ତା ଓ ନେତୃତ୍ୱ ନେବାରେ ଅଗ୍ରଣୀ । ଜୀବନର ବିଭିନ୍ନ ସମୟକୁ ସେ କୁଶଳୀ କଳାକାରର ତୁଳୀରେ ଜୀବନ୍ତ କରି ରଖିଥିଲେ । ବୋଧହୁଏ ଏପରି ଅଭିରୁଚି ଓ ପାରଦର୍ଶିତାର ସଙ୍ଗମ କ୍ୱଚିତ୍ ଦେଖାଯାଏ ।

ବସ୍ତୁଟିଏ ଦେଖି ତା'ର ଅବିକଳ ନକଲ ଚିତ୍ରିଦେବାରେ ସେ ଥିଲେ ସିଦ୍ଧହସ୍ତ । କେବଳ କାଗଜ ବା ରଙ୍ଗତୁଳୀରେ ନୁହେଁ, ପଥର ଦେହରେ ନିହାଣ ମୁନରେ ମଧ୍ୟ ଫୁଟାଇ ପାରୁଥିଲେ ଜୀବନ । ଜୀବନ ଥିଲା ତାଙ୍କର ସାହିତ୍ୟମୟ । କେବଳ ପଠନ ବା ଲିଖନ କ୍ଷେତ୍ରରେ ନୁହେଁ, ପ୍ରତିମୁହୂର୍ତ୍ତର ସମୟକୁ ସାହିତ୍ୟର ରୂପଦେବାରେ ତାଙ୍କର ଥିଲା ଅଶେଷ ଆଗ୍ରହ । ଚିକିତ୍ସକ ଜୀବନର ସମସ୍ତ ଭିତରେ ବି ସେ ଓଡ଼ିଆ ସାହିତ୍ୟ, ଇଂରାଜୀ

ସାହିତ୍ୟ ଓ ହିନ୍ଦି ସାହିତ୍ୟର ବହୁପୁସ୍ତକ ପାଠ କରିଥିଲେ । ଉତ୍କଳ ପ୍ରାଣ ବୈଦ୍ୟନାଥ ତାଙ୍କ "ଜାଗରେ ଉତ୍କଳବାସୀ" କବିତାରେ ଲେଖିଥିଲେ —

ଜାଗରେ ଉତ୍କଳବାସୀ ଜାଗ କୋଟି କଙ୍କାଳ
ଛିନ୍ନମସ୍ତା ମାଆ ତୋ'ର ଡାକେ ହୋଇ ବିକଳ ।
ଏ ଦେଶ ପାଇକ ପୁଅ, ଏ ଦେଶର ସନ୍ତାନ,
ଭାଙ୍ଗିଥିଲେ ବିଦେଶୀର ପୁଞ୍ଜିପତି ଶାସନ ।

+ + +

ଏ ଦେଶର ଖାରବେଳ ଐଶ୍ୱର୍ଯ୍ୟ ନାଶକ
ଏ ଦେଶର ଜୟଦେବ କବିକୁଳ ଶାସକ
ଏ ଦେଶର ଶିଳ୍ପକଳା କାଳେ କାଳେ ସୁନ୍ଦର
ଏ ଦେଶର କୋଣାର୍କ ଯୁଗେ ଯୁଗେ ଅମର ।

ସେହିପରି ନାଟ୍ୟକାର ଭାବେ ମେଡିକାଲ ପଢ଼ିବାବେଳେ ଓ ଅପ୍ରୋଜିତ ରେଡିଓ ନାଟକ 'ଆଖି' କଟକ ଆକାଶବାଣୀ କେନ୍ଦ୍ରରୁ ଲୋକପ୍ରିୟତା ଦୃଷ୍ଟିରୁ ବହୁବାର ପ୍ରସାରିତ ହୋଇଥିଲା । କେବଳ ସେତିକି ନୁହେଁ, ଅଖିଳ ଭାରତୀୟ ରେଡିଓ ନାଟକ ପ୍ରତିଯୋଗିତାରେ ପ୍ରଥମସ୍ଥାନ ଅଧିକାର କରି ପୁରସ୍କୃତ ହୋଇଥିଲେ । ସ୍କୁଲ ଓ କଲେଜର ମୁଖପତ୍ରମାନଙ୍କରେ ପ୍ରକାଶିତ ହୋଇଥିବା ତାଙ୍କ କବିତା, ଗଳ୍ପ ଏବଂ ପ୍ରବନ୍ଧ ସବୁ ସ୍ୱତନ୍ତ୍ର ଓ ଭିନ୍ନ ସ୍ୱାଦ ଯୁକ୍ତ । ଅନେକ ପ୍ରଚ୍ଛଦପଟ ଅଙ୍କନ କରିବାରେ ସେ ଥିଲେ ସିଦ୍ଧହସ୍ତ ।

ତର୍କପୂର୍ଣ୍ଣ ଏବଂ ଓଜସ୍ୱିନୀ ବକ୍ତୃତା ଦେବାରେ ତାଙ୍କର ଥିଲା ବିଶେଷ ପାରଦର୍ଶିତା । ସୁତରାଂ ଶାବ୍ଦିକ ଚମତ୍କାରିତାରେ ଅନ୍ୟମାନଙ୍କୁ ଆକୃଷ୍ଟ କରିବାର ଶକ୍ତି ତାଙ୍କପାଇଁ ନେତୃତ୍ୱ ଦେବାର ରାସ୍ତା ପ୍ରସ୍ତୁତ କରି ଦେଉଥିଲା । ତର୍କ ପ୍ରତିଯୋଗିତାରେ ବହୁବାର ପ୍ରଥମ ହେବା ଓ ପରବର୍ତ୍ତୀ ପର୍ଯ୍ୟାୟରେ ନେତୃତ୍ୱ ନେବା ତାଙ୍କ ଜୀବନ କାହାଣୀର ଅବିଚ୍ଛେଦ୍ୟ ଅଙ୍ଗ । ନେତୃତ୍ୱ ନେବାପାଇଁ ସେ ଯେ ସର୍ବୋତଭାବେ ଉପଯୁକ୍ତ, ଏହା ତାଙ୍କର

ସ୍କୁଲପାଠପଢ଼ାଠାରୁ ଜୀବନର ଅନ୍ତିମ ଦିବସ ପର୍ଯ୍ୟନ୍ତ ସେ ଜଡ଼ିତ ଥିବା ସଙ୍ଗଠନାତ୍ମକ ପଦପଦବୀମାନଙ୍କରୁ ପ୍ରମାଣିତ ହୁଏ । ସ୍କୁଲରେ ପାଠ ପଢ଼ୁଥିବାବେଳେ ସେ ବର୍ଷକର ଶ୍ରେଣୀର ମନୀଟର ରହୁଥିଲେ । କଲେଜ ଜୀବନର ପ୍ରାରମ୍ଭରେ ସେ ହେଲେ ସାମନ୍ତଚନ୍ଦ୍ର ଶେଖର ମହାବିଦ୍ୟାଳୟ ଗ୍ରନ୍ଥ ସଂସଦ (୧୯୬୦-୬୧)ର ସଂପାଦକ । କଟକ ମେଡିକାଲ କଲେଜରେ ପଢ଼ୁଥିଲାବେଳେ ସେ ଥିଲେ ଗ୍ରନ୍ଥସଂସଦର ସଂପାଦକ ଏବଂ ତୃତୀୟ ବର୍ଷ ବେଳେ ସେ ଥିଲେ ସାଧାରଣ ସଂପାଦକ । ୧୯୬୪ ମସିହାରେ ଦେଖାଦେଇଥିବା ରାଜ୍ୟବ୍ୟାପୀ ଛାତ୍ର ଆନ୍ଦୋଳନକୁ ସେ ମେଡ଼ିକାଲ କଲେଜର ସାଧାରଣ ସଂପାଦକ ପଦରୁ ଦେଇଥିବା ନେତୃତ୍ୱ ଏବେ ବି ତାଙ୍କ ସହପାଠୀମାନେ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି ।

ଜୀବନର ଶେଷ ପର୍ଯ୍ୟନ୍ତ ଓଡ଼ିଶା ଡାକ୍ତରୀ ସେବାସଂଘର (OMSA) ବିଭିନ୍ନ ପଦବୀରେ କାର୍ଯ୍ୟ ସଂପାଦନ କରି ସେ ନିଜର ନେତୃତ୍ୱର ସ୍ୱାକ୍ଷର ରଖିଯାଇଛନ୍ତି । ଏହି ସଂସ୍ଥାର ଯୁଗ୍ମ ସଂପାଦକ, ସଂଗଠକ, ସାଧାରଣ ସଂପାଦକ ଓ ଉପସଭାପତି ପ୍ରଭୃତି ପଦବୀରେ ସେ କରିଯାଇଥିବା ବିଭିନ୍ନ କାର୍ଯ୍ୟ ଅବଦାନ ପାଇଁ ତାଙ୍କୁ ସ୍ମରଣୀୟ କରିରଖିବ । ଭାରତୀୟ ସେବାସଂଘ (IMA), ଓଡ଼ିଶା ଶାଖାର ସେ ବି ସକ୍ରିୟ ସଦସ୍ୟ ଥିଲେ ।

ଏସବୁ ସତ୍ତ୍ୱେ ନିଜ ବିଭାଗରେ (ପ୍ରସୂତି ଓ ସ୍ତ୍ରୀରୋଗ) ଗବେଷଣା ଓ ପ୍ରଗତି ସହ ସେ ଘନିଷ୍ଠ ଭାବେ ସଂଶ୍ଲିଷ୍ଟ ରହିଥିଲେ । ସେଥିପାଇଁ ସ୍ୱଳ୍ପକାଳ ଭିତରେ ସେ ବିଶ୍ୱସ୍ୱାସ୍ଥ୍ୟ ସଙ୍ଗଠନ (WHO) ଦ୍ୱାରା ଆୟୋଜିତ Neonatology, ଔରଙ୍ଗାବାଦ ମେଡ଼ିକାଲ କଲେଜଠାରେ ଅନୁଷ୍ଠିତ ଆଞ୍ଚଳିକ ସେମିନାର ଟ୍ରେନିଙ୍ଗ, S. S. G. ହସ୍ପିଟାଲ, ବରୋଦାରେ Laproscopic ଟ୍ରେନିଙ୍ଗ ଏବଂ U. K. ସରକାରଙ୍କ ଦ୍ୱାରା ଭୁବନେଶ୍ୱରଠାରେ ଆୟୋଜିତ Liver Pool School of Tropical Medicine for obst and Gynace diseases କାର୍ଯ୍ୟଶାଳାରେ ଯୋଗଦେଇ ଜ୍ଞାନ ଆହରଣ କରିଥିଲେ । କୌଣସି ରୋଗୀପ୍ରତି ଅବହେଳା ପ୍ରଦର୍ଶନକୁ ସେ ବରଦାସ୍ତ କରୁନଥିଲେ ।

ଏମିତି ଅନେକ ହାଡ଼ଭଙ୍ଗା ଶୀତବର୍ଷା ଓ ମୁଣ୍ଡଫଟା ଖରାରେ ମଧ୍ୟ ସେ କଷ୍ଟସହି ରୋଗୀସେବାପାଇଁ ବାହାରି ପଡ଼ୁଥିଲେ । କେତେ କ୍ଲାନ୍ତ ଅପରାହ୍ନରେ ବିଶ୍ରାମ ପାଇନଥିବା ଶରୀର ପୁଣି କୁହୁଡ଼ି ପଡ଼ିରଯାଇ ଅନୁଶୋଚନା ଅଥବା ଦ୍ୱିଧା ବିହୀନ ଭାବେ ଅସ୍ତ୍ରୋପଚାର କରିବାକୁ ପ୍ରସ୍ତୁତ ହୋଇଥିବା ସେଇ ଡାକ୍ତର ବୈଦ୍ୟନାଥ ମିଶ୍ରଙ୍କ ପାଇଁ ରୋଗୀବୃନ୍ଦ, ଚିକିତ୍ସାଳୟ ଏବଂ ସ୍ୱାସ୍ଥ୍ୟବିଭାଗ ଆଜି ଗର୍ବ ଅନୁଭବ କରେ ।

ନିଜେ ନ୍ୟାୟ ପଥରେ ଚାଲିବା ଏବଂ ଅନ୍ୟାୟ ବିରୁଦ୍ଧରେ ସ୍ୱର-ଉତ୍ତୋଳନ କରିବା ତାଙ୍କ ଜୀବନର ଏକ ସହଜାତ ପ୍ରବୃତ୍ତି ହୋଇ ରହିଥିଲା । କାଉଁରିଆ କାଠିପରି ଶରୀରଟା କେବେ ଅନୀତି ସମ୍ମୁଖରେ ଅବନତ ହୋଇଯାଇ ନଥିଲା । ଅନେକବାର ପରିବାରରେ ଅଥବା କର୍ମକ୍ଷେତ୍ରରେ ତାଙ୍କର ଏ ଦୃଢ଼ମନୀୟ ମନୋବଳ ପରିଲକ୍ଷିତ ହୋଇଅଛି ଏବଂ ପ୍ରତ୍ୟେକସ୍ଥଳେ ସେ ବିଜୟମଣ୍ଡିତ ହୋଇଅଛନ୍ତି ।

ଜଣେ ମେଳାପୀ, ଦରଦୀ ମଣିଷ ହିସାବରେ ତାଙ୍କୁ ଅନେକ ସମୟରେ ବିପରୀତ ଧର୍ମୀ "ମୂଲିଆ"ଠାରୁ "ମନ୍ତ୍ରୀ"ଙ୍କ ପର୍ଯ୍ୟନ୍ତ, "ସେବକ"ଠାରୁ "ଅଭିଭାବକ"ଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ନିଗୂଢ଼ ଅନ୍ତର ଭିତରେ ବାନ୍ଧି ରଖିଥିଲେ । ରୋଗୀଙ୍କ ଆଗରେ ଡାକ୍ତର, ସମାଜ ଆଗରେ ପଦସ୍ଥ କର୍ମଚାରୀ ଓ ପୁତ୍ରକନ୍ୟାଙ୍କ ଆଗରେ ଆଦର୍ଶ ପିତା ଭାବରେ ସେ ତାଙ୍କର ବ୍ୟକ୍ତିତ୍ୱ ପ୍ରତିଷ୍ଠା କରିଯାଇଛନ୍ତି । ନିଜ ବଗିଚା ନିଜେ ସୁନ୍ଦର କରିବା, ନିଜ ଘୋଡ଼ା ନିଜେ ସଜାଡ଼ି ରଖିବା, ଚଳିଗାଡ଼ି ଠେଲିବା, ଏସବୁ ଯିଏ ଦେଖିଛି, ସେ ତାଙ୍କପ୍ରତି ସେହୁସିକ୍ତ ଓ ସମ୍ବେଦନଶୀଳ ହୋଇଉଠିଛି, ଯଥାର୍ଥରେ ତାଙ୍କର ସମସ୍ତ ଅଭିରୁଚି ଥିଲା ଆଦର୍ଶମୟ ଓ ପାରଦର୍ଶିତାରେ ସେ ଥିଲେ 'ପୁରୁଷୋତ୍ତମ" ।

**ମହାପ୍ରୟାଣ**—ସେଦିନ ଥିଲା ୧୯୮୯ ମସିହା ଡିସେମ୍ବର ମାସ ୯ ତାରିଖ, ଶନିବାର, ଗୋମଣ୍ଡି ଏକାଦଶୀ । ସକାଳର ସୂର୍ଯ୍ୟ ଅସ୍ୱାଭାବିକ ନଥିଲା, ପ୍ରକୃତିର ନିୟମରେ କିଛି ବିଲକ୍ଷଣ ମଧ୍ୟ । ପୂର୍ବାହ୍ନର ଡାକ୍ତରଖାନା କାର୍ଯ୍ୟସାରି ଶୀଘ୍ର ଘରକୁ ଫେରି ଆସିଥିଲେ । "ତମସା"

( OMSA )ର ଜରୁରୀ ସଭାରେ ଯୋଗଦେବାକୁ କଟକ ଯିବାପାଇଁ ଭାଙ୍ଗିଯାଇଥିବା ସଂଘକୁ ପୁନର୍ଗଠିତ କରିବାପାଇଁ ଅନ୍ତରଙ୍ଗ ବନ୍ଧୁ ଡାକ୍ତର ଜଗନ୍ନାଥ ମିଶ୍ରଙ୍କ ସହ ଅଫିସଗାଡ଼ିରେ ଅନେକ ଆଶା ଓ ଭାବନାକୁ ନେଇ କଟକରେ ପହଞ୍ଚିଥିଲେ ଏବଂ ସଭାରେ ସ୍ୱାଭାବିକ ବିଚକ୍ଷଣତାରେ ଉଦ୍‌ବୋଧନ ଦେଇ ସଙ୍ଗଠନର ଦୃଢ଼ତା ସଂପାଦନା ଦିଗରେ ସମସ୍ତଙ୍କୁ ଅନୁପ୍ରାଣିତ କରିଥିଲେ । ଆତ୍ମସନ୍ତୋଷଭରା ଅନ୍ତରରେ କଟକରୁ ଫେରୁଥିବା ବାଟରେ କିଏ ଜାଣିଥିଲା ଆଶାର ବୈତରଣୀରେ ଭାସି ଆସୁଥିବା ନୌକାଟି ଅପରାହ୍ଣର ଆକାଶରେ ଚଳବାଦଲର ଆଖିମିଟିକାରେ ଲକ୍ଷ୍ୟଭ୍ରଷ୍ଟ ହୋଇଯିବ ବୋଲି । ସତକୁସତ ବାସସ୍ଥାନରେ ପହଞ୍ଚିବାର କିଛିବାଟ ଦୂରରୁ ଜିପ୍‌ର ଯାହାକୁ ମଝିରାସ୍ତାରେ ଗୁଡ଼ ସେ ନିଜର ମହାଯାତ୍ରାରେ ଆଗେଇ ଯାଇଥିଲେ । ବହୁଜୀବନର ରକ୍ଷାକାରୀ, ରାସ୍ତାଉପରେ, ନିଃସହାୟ ଅବସ୍ଥାରେ, ମହାକାଳର କବଳରେ ନିପତିତ ହୋଇଥିଲେ । ପଛରେ ରହିଗଲା ତାଙ୍କ ଅସହାୟ ପରିବାର, ସନ୍ତପ୍ତ ବନ୍ଧୁବର୍ଗ । ଅପରିଣତ ବୟସରେ ଆଦର୍ଶ ବ୍ୟକ୍ତିତ୍ୱର ସ୍ୱାକ୍ଷର ଡାକ୍ତର ବୈଦ୍ୟନାଥ ମିଶ୍ର ଯୁଗ ଯୁଗ ପାଇଁ ଇତିହାସରେ ଏକ ଅମ୍ଳାନ ସ୍ମାରକୀ ହୋଇ ରହିଗଲେ ।

ଗାଁର ପଲ୍ଲୀମଙ୍ଗଳ ସମିତିଠାରୁ ରୋଟାରୀ ଇନ୍‌ଟରନ୍ୟାସନାଲ ପର୍ଯ୍ୟନ୍ତ, ଓମସା'ରୁ ଆଇ. ଏମ୍. ଏ. ଯାଏଁ ବହୁ ଅନୁଷ୍ଠାନ ପାଇଁ ଜୀବନର ଶେଷ ନିଃଶ୍ୱାସ ନେବା ଯାଏ ସେ କାମ କରି ପରିଶେଷରେ ଅନ୍ୟମାନଙ୍କ ଲାଗି, ନିଜେ ଏକ ଅନୁଷ୍ଠାନ ହୋଇଯାଇଛନ୍ତି ।

ତାଙ୍କର ଅଗଣିତ ବନ୍ଧୁ ଏବେ ବୈଦ୍ୟନାଥ ମୈତ୍ରୀ ସଂସଦନାମରେ ପୁରୀରେ ବହୁବିଧ ଲକ୍ଷ୍ୟରଖି ଏକ ଅନୁଷ୍ଠାନ ଗଢ଼ିଛନ୍ତି । ଡାକ୍ତର ମିଶ୍ରଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ ବିଭିନ୍ନ ତହପନ୍ତିକାକୁ ଏକ ବାନ୍ଧିଦେଇ ସେମାନେ ଲେଖିଛନ୍ତି—

ବନ୍ଧୁ !

ଅମର ପଥର ସନ୍ଧାନରେ ତମେ ଚାଲିଗଲେ, ଅତି ଅପ୍ରତ୍ୟାଶିତ ଭାବେ, ସମସ୍ତଙ୍କୁ ଦେଇଣ, ତମ ହୃଦୟର ସ୍ପନ୍ଦନକୁ ଉପଲବ୍ଧି କରିବାକୁ। ଆଦର୍ଶ ଓ ସେବାର ବନ୍ଧନ ମଧ୍ୟରେ ଅହରହ କର୍ମ କରି କରି ନିଜକୁ ଉତ୍ସର୍ଗ କରିଦେଲ ଅତି ନିଭୃତ ଭାବରେ। ମାୟାମୋହର ସଂସାରରେ ଛନ୍ଦିହୋଇ ଆମେମାନେ ବଞ୍ଚିଥିବୁ ଯେତେଦିନ, ତୁମ ସାନ୍ନିଧ୍ୟର କୁଡ଼ି କୁଡ଼ି ସ୍ମୃତିସବୁ ରହିଥିବ, ସେତେଦିନ ଆମ ହୃଦୟରେ ଝୁରିଥିବୁ – ଭୁଲିବୁନି କେବେ। ତୁମେ କଣ ଭୁଲିଯିବ ବନ୍ଧୁତ୍ୱର ବନ୍ଧନ କେବେ ? ତୁମେ ନିଶ୍ଚେ ଥିବ ଆମ ପାଖେ ପାଖେ ; ଦେଖାଉଥିବ ଆଦର୍ଶ ଓ କର୍ତ୍ତବ୍ୟର ପଥ ବିଭୁପଦେ, ଏତିକି ଜଣାଣ ।। ଆତ୍ମା ତୁମ ଶାନ୍ତି ଲଭୁ ସେହି ଅନାମୟ-ଧାମରେ। ତୁମର

ବୈଦ୍ୟନାଥ ମୈତ୍ରୀ ସଂସଦର ବନ୍ଧୁବର୍ଗ

***

# ଅନୁସ୍ମରଣମ୍

## ପ୍ରଫେସର ଗୌରୀକୁମାର ବ୍ରହ୍ମା – କବିକୋକିଳଃ

ଶ୍ରେଷ୍ଠୋ ହି ବୈଦ୍ୟଃ ଶିବ ଏବ "ବୈଦ୍ୟ-
ନାଥ"ସ୍ତଥା ନାମ ତବାଽପି ସାର୍ଥମ୍ ।
ସମ୍ମାନସୂଚୀ ଖଳୁ "ମିଶ୍ର" ଶବ୍ଦଃ
ଜାନନ୍ତି ସର୍ବେ ତବ ମାନ୍ୟତାଂଚ । ୧ ।

– ୨ –

ଜନ୍ମ ତ୍ୱୟାପ୍ତଂ ମମ ପୂର୍ବଜାନାଂ
ଗ୍ରାମେ ପ୍ରସିଦ୍ଧେ "ନରସିଂହ"–ପୁର୍କେ ।
ବଂଶେ ମହତ୍ପଣ୍ଡିତ-ସାଧକାନାଂ
ହେ ବୈଦ୍ୟନାଥ ! ତ୍ୱମତୋ ହି ଧନ୍ୟଃ ॥

– ୩ –

ଗ୍ରାମସ୍ତ୍ୱଦୀୟୋ ପରମାଭିରାମୋ
ଗ୍ରୀଷ୍ମେଽପି ଶାନ୍ତଃ କଳ ନାରିକେଳୈଃ
ମୁଦା ସଦା ଶୀତଳଷଷ୍ଠିଯାତ୍ରା-
ମହୋତ୍ସବେ ତ୍ୱଂ ଶିଶୁବଦ୍-ବଲୋଳଃ ॥

– ୪ –

ବାଲ୍ୟେଽପି କାଳେ ପଠନାନୁରାଗୀ
ପଠଦ୍ଦଶାୟାଂ ଚରମଗ୍ରଣୀଃ ସ୍ତ୍ୱମ୍ ।
ସ୍ୱ ଶିଷ୍ୟକୈଃ - ଗୁରୁଗଣୈଃ ପ୍ରଶଂସ୍ୟା
ହେ ବୈଦ୍ୟନାଥ ! ପ୍ରଥିତାଧରସ୍ତ୍ୱମ୍ ॥

- ୫ -

ବିଦ୍ୱାସ୍ତୁ ବିଦ୍ୟାଂ ସ୍ୱକୁଳ - ପ୍ରସିଦ୍ଧାଂ
ଚିକିତ୍ସକୋଽ ଭୂଃ ଭଗବନ୍ନଦେଶାତ୍ ।
ତ୍ୱଂ ସେବକୋ ରୋଗିଗଣସ୍ୟ ନିତ୍ୟଂ
ହେ ବୈଦ୍ୟନାଥ !   ତ୍ୱାମହଂ ସ୍ମରାମି ।।

- ୬ -

ରାଜ୍ୟେ ଭୂପାସ୍ତୁ ଶତଶୋଽତ୍ର ଦକ୍ଷାଃ
ଚିକିତ୍ସକାସ୍ତେ ସହକର୍ମିଣୋ ବା ।
ଓମ୍-ସେ-ଷ ତେଷାଂ ମିଳନେହ୍ୱ ପୀଠେ
ତ୍ୱଂ ବୈଦ୍ୟନାଥ ସ୍ୱକୃତିତ୍ୱ-ଖ୍ୟାତଃ ।।

- ୭ -

ତ୍ୱଂ ରାଜକାର୍ଯାତ୍ମକ-କର୍ମ-ଭୂମୌ
ନାନା ସମସ୍ୟାଃ ସହସା ବିଚିନ୍ତ୍ୟ ।
ତାସାଂ ସମାଧାନ-ବିଧୌ ପ୍ରବୃତ୍ତୋ
ହେ ବୈଦ୍ୟନାଥ !   ପ୍ରଖରା ମତିସ୍ତେ ।।

- ୮ -

ଭିନ୍ନେଷୁ ରାଜ୍ୟେ ନଗରେଷୁ ଚୈବ
ସଂସ୍ଥାପନଂ "ହାସ୍‌ପିଟଲେ"ଷୁ ଗୃହୀତ୍ୱ ।
ସଙ୍ଘଶ ସେବା-ବିଧି-ନିଷ୍ଠୟା ତ୍ୱଂ
ସଂପ୍ରାପ୍ତବାନାଶୁ ଜନପ୍ରିୟତ୍ୱମ୍ ।।

- ୯ -

ତ୍ୱଂ ଲେଖକସ୍ତ୍ୱଂ ସତତଂ ଚ ହାସ୍ୟ-
ରସପ୍ରିୟୋ ଭାଷଣ-ଦାନଦକ୍ଷଃ ।

ନାଟ୍ୟାଦ୍ୱ ସଙ୍ଗୀତ - କଳାନୁରକ୍ତୋ
ନ କେବଳଂ ବୈଦ୍ୟବରେଷୁ ଭବ୍ୟଃ ॥

- ୧୦ -

ବଦ୍ଧାୟୁ ମର୍ତ୍ତ୍ୟଂଚ ଗତୋଦ୍ଧ୍ୱ ସ୍ୱର୍ଗଂ
ତତ୍ରାଽପି ସେବାଂ କୁରୁଷେ ଯଥେଷ୍ଟମ୍ ।
କୃତ୍ୱା ପ୍ରତିଷ୍ଠାଂ ସୁରବୈଦ୍ୟ ଭୂପାଦ୍-
ବନ୍ଧୋ ! ସମାଗଚ୍ଛ ପୁନଃ ସ୍ୱଧାମ ॥

—o—

ଭୁବନେଶ୍ୱର-୨

# ମୂଲ୍ୟବୋଧର ବୈଦ୍ୟନାଥ

ଶ୍ରୀ ହରିହର ବାହିନୀପତି

ଡାକ୍ତର ବୈଦ୍ୟନାଥ ମିଶ୍ର, ମୋର ଅନୁଜ ପ୍ରତିମ । ଗୃହୁଁ ଗୃହୁଁ ତାଙ୍କର ଦେହାନ୍ତ ବର୍ଷକୁ ଧାଇଁ ଦେଲାଣି ବୋଲି ଜାଣିଲେ ତାଙ୍କର ଅଗଣିତ ରୋଗୀ, ବନ୍ଧୁ, ସହକର୍ମୀ ଓ ସହଯୋଗୀମାନେ ଯେ କେତେ ବ୍ୟଥିତ ହେଉଥିବେ, ତାହା କେବଳ ଅନୁଭବୀ ହିଁ ଜାଣେ । ପରିବାର ବର୍ଗ, ଅପ୍ରାପ୍ତ ବୟସ୍କ ସନ୍ତାନ ସନ୍ତତି, ବିଶେଷତଃ ଗୋଟିଏ ମୁଦ୍ରାର ଅପରପାର୍ଶ୍ୱ ଭଳି ତାଙ୍କର ସମ-ଧର୍ମୀ ପତ୍ନୀ ଡାକ୍ତର ହେମଲତା ମିଶ୍ର, ଯାହାଙ୍କୁ ଦେଖିଥିଲି ସେଦିନ, ବୈଧବ୍ୟର ଅଳ୍ପ କେତେକ ଘଣ୍ଟାପରେ, ସେ ଦୃଶ୍ୟ ଜୀବନରେ ଭୁଲି ହେବନାହିଁ । ପରିବାର ବା ଦୁନିଆଁରେ ସବୁ ଯେ ଗତାନୁଗତିକ ଭାବରେ ନ ଚାଲିଛି ତାହା ନୁହେଁ । କିନ୍ତୁ ହେମଲତାଙ୍କ ଭଳି ଉଚ୍ଚଶିକ୍ଷିତା, ପ୍ରତିଷ୍ଠିତା ଏବଂ ସ୍ୱାବଲମ୍ବନଶୀଳା ଜଣେ ନାରୀଙ୍କ ଉପରେ ବୈଧବ୍ୟ—ବିଷାଦ ଦିନକୁ ଦିନ ଅଧିକରୁ ଅଧିକତର ଗଭୀର ହେବା, ମୁଁ ଯେତେବେଳେ ତାଙ୍କୁ ଦେଖେ ଉପଲବ୍ଧି କରେ । ବୈଦ୍ୟନାଥଙ୍କ ସରଳ ସଙ୍କୋଚ ମୁଖ-ମଣ୍ଡଳ ମୋ ମାନସ ଚକ୍ଷୁରେ ଭାସି ଆସେ । ମୁଁ କଳ୍ପନା କରେ, ସେମାନଙ୍କର ଦାମ୍ପତ୍ୟ ଜୀବନରେ, ଜଣକର ଜଣକ ପ୍ରତି କି ଥିଲ ଅନୁରାଗ, ଅନୁରକ୍ତି ଓ ପ୍ରଭାବ । ଜଣକ ଅଭାବରେ ଆଜି ଜଣକର ଅବସ୍ଥା କଣ ? ସତେ ଯେପରି ଗୋଟିଏ ବୃନ୍ତର ଦୁଇଟି କଳି ମଧ୍ୟରୁ ଗୋଟିଏ ପ୍ରସ୍ଫୁଟିତ ହୋଇ ସମୟାନୁକ୍ରମେ ମଉଳି ଝଡ଼ିବା ପୂର୍ବରୁ କିଏ ଜଣେ ନିଷ୍ଠୁର ଭାବରେ ସେ କଳିଟିକୁ ଛିଡ଼ାଇଦେବାରୁ ଅନ୍ୟ କଳିଟି ଭାବୁଛି "ମୋ ଜୀବନ, ମୋ ସ୍ଥିତି, ସବୁ ଯେପରି ନିରର୍ଥକ ।"

କାଲିପରି ମନେ ପଡ଼ୁଛି ୧୯୭୮-୭୯ ମସିହା ହେବ । ମୁଁ ଯେତେବେଳେ ତତ୍କାଳୀନ ବିଧାନ ସଭାର ଉପବାଚସ୍ପତି ଓ ପ୍ରଜାସମାଜ-ବାଦୀ ଦଳର ରାଜ୍ୟ ସଂପାଦକ ଥାଇ, ଭବାନୀପାଟଣା ଯାଇଥାଏ କୌଣସି ସାଧାରଣ କାର୍ଯ୍ୟକ୍ରମରେ, ନବୀନ ନହେଲେ ବି ତରୁଣ ଦାମ୍ପତ୍ୟ ଜୀବନର

ପ୍ରଥମ ଅର୍ଘ୍ୟ, ନବ-ଜାତ କନ୍ୟାର ସ୍ୱଜନଙ୍କୁ ସେମାନେ ମୋତେ ନିମନ୍ତ୍ରଣ କରିଥିଲେ । ମୁଁ କେବଳ ସେଥିରେ ଯୋଗଦେଇଥିଲି, ତାହା ନୁହେଁ, ସେହି ବୟସରେ, ସେହି ସମୟରୁ ହିଁ, ସେମାନେ ପାରଦର୍ଶୀ ଓ ଲୋକପ୍ରିୟ ଚିକିତ୍ସକ, ଚିକିତ୍ସିକା ହୋଇଥିବାର ସୂଚନା ପାଇ ଗର୍ବରେ ଫୁଲି ଉଠିଥିଲି । ପରେ ସମ୍ବଲପୁର ଓ ଅନ୍ୟ କେତେକ ଓଡ଼ିଶାର ଦୂରବର୍ତ୍ତୀ ଅଞ୍ଚଳରେ ବୈଦ୍ୟନାଥଙ୍କ ଖ୍ୟାତି ମୋତେ ଅଭିଭୂତ କରିଛି । ଏବେ ଅଳ୍ପ କେତେଦିନ ତଳେ ଡାକ୍ତର ସୁକୁମାର ମିଶ୍ର ଯେ କି ପ୍ରସୂତି ଚିକିତ୍ସାରେ ଜଣେ ଅନନ୍ୟ ସାଧାରଣ ଚିକିତ୍ସକ, ତାଙ୍କ ପାଖରେ, ପ୍ରସଙ୍ଗ କ୍ରମେ ସ୍ୱର୍ଗତ ବୈଦ୍ୟନାଥଙ୍କ କଥା, ଉତ୍ଥାପନ କଲି ମାତ୍ର ସେ କହି ପକାଇଲେ, ସେ ଥିଲି ମୋର ପ୍ରିୟତମ ଛାତ୍ର ।

ଯଥାର୍ଥରେ, ବୈଦ୍ୟନାଥ ଜଣେ ସୁଦକ୍ଷ ଚିକିତ୍ସକ ଭାବରେ ତାଙ୍କ ନାମକୁ ସାର୍ଥକ କରିଥିଲେ । ଡାକ୍ତରୀ ଅବଶ୍ୟ ଥିଲି ତାଙ୍କର ଜୀବିକା । କିନ୍ତୁ ତାଙ୍କର ଜୀବନ ଥିଲି ସଙ୍ଗଠନ । ବାରଣସୀ ବଢ଼େଇ ପାଇଁ ପୁଅକୁ ଦାୟୀ କରିବା, ସତେ ଯେପରି ତାଙ୍କର ଧ୍ୟେୟ, ପରମ କର୍ତ୍ତବ୍ୟ ବୋଲି ସେ ଧରି ନେଇଥିଲେ । ଅନ୍ୟାୟ ଅନୀତି ବିରୁଦ୍ଧରେ ସଂଗ୍ରାମର ସାଙ୍ଗଠନିକ ନେତୃତ୍ୱ ନେଇ, ସେ ଅକାତରରେ ହସି ହସି ଅନେକ କଷ୍ଟ ବରଣ କରିଥିବା ମୁଁ ଜାଣେ । ଶେଷକୁ ଅପରିପକ୍ୱ ବୟସରେ ତାଙ୍କର ଜୀବନ-ଦୀପ ଆକସ୍ମିକ ଭାବରେ ନିଭିଗଲି ମଧ୍ୟ, ସେହିଭଳି ଏକ ସାଙ୍ଗଠନିକ କର୍ତ୍ତବ୍ୟ ନିର୍ବାହରେ । ଅମାୟିକ ବ୍ୟବହାର ସଂପନ୍ନ ଜଣେ ପ୍ରଖ୍ୟାତ ଚିକିତ୍ସକ ନୁହଁନ୍ତି, ଜଣେ ସୁବକ୍ତା, ନାଟ୍ୟକାର ଓ ମାନବିକ ମୂଲ୍ୟବୋଧର ପବିତ୍ର ପରୀକ୍ଷା ନିରୀକ୍ଷାରେ ତାଙ୍କ ସ୍ୱଳ୍ପ ଜୀବନର ପ୍ରତ୍ୟେକ ଛିନ୍ନ କାହିଁକି, ପ୍ରତି ମୁହୂର୍ତ୍ତ ନିଷ୍ଠିତ ଥିଲି ସୁରକ୍ଷିତ ଓ ସଂରକ୍ଷିତ । ଆମଭଳି ବୟସ୍କ ବ୍ୟକ୍ତିମାନଙ୍କ ପାଇଁ, ଏଭଳି ଆଦର୍ଶ ସର୍ବଗୁଣସଂପନ୍ନ । ଅନୁଜମାନଙ୍କର ସ୍ମୃତି ତର୍ପଣ କେତେ ଯେ ଦୁଃଖଦାୟକ, ତାହାହିଁ କେବଳ ଅନୁଭୂତିର ବିଷୟ ।

***

କଲେଜ ରୋଡ଼, ପୁରୀ

# ପ୍ରୀତିଅର୍ଘ୍ୟ

ପ୍ରଫୁଲ୍ଲ ପଟ୍ଟନାୟକ

ବନ୍ଧୁ ହେ ! ତୁମେ ଅକାଳେ ପଡ଼ିଲ ଝରି
ତୁମ ପାଇଁ ଆଜ ଲେଖୁଛି କବିତା
ତୁମେ କି ପଢ଼ିବ ପାରି ?

ତୁମେ ମୋର ଥିଲ ଲେଖଣୀ ମୁନର ଧାର
ତୁମେ ଗଲାପରେ କିଏ ପଚାରିବ
ବୁଝିବ ଲେଖଣୀ ମୂଲ ।

ତୁମେ ଭଲପାଅ ପଢ଼ିବାକୁ ମୋର ଲେଖା
ଏ ଜୀବନେ ଆଉ ମିଳିବନି କେବେ ଦେଖା
ତେଣୁ ଆଜ ଲେଖେ ପ୍ରୀତିର ଅର୍ଘ୍ୟଦେଇ
ତୁମ ଆତ୍ମାର ସଦ୍‌ଗତି ଲଭୁ ଭାଇ ।



ଘରଣୀମଠ ଲେନ୍, ପୁରୀ

# ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

ଡଃ ଜଗନ୍ନାଥ ମିଶ୍ର

"କେହି ରହି ନାହିଁ ରହିବ ନାହିଁ ଏ ଭବରଙ୍ଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡିବେ କାଳବଳେ ।
ମାନବ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜିଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ" ।

ଏହି ମହାପ୍ରାଣ ବ୍ୟକ୍ତିଙ୍କର ପଂକ୍ତିଗୁଡ଼ିକ ବୁଝିଲେ, ଆମେ ଆମର ପୃଥିବୀର ସୃଷ୍ଟି ଓ କାର୍ଯ୍ୟ ବିଷୟରେ ଅବଗତ ହେଉ । କର୍ମଯୋଗୀମାନେ ପୃଥିବୀ ପୃଷ୍ଠରେ ଅଳ୍ପ ସମୟ ରହି ମଧ୍ୟ ନିଜର ଗୁଣ ବିକଶିତ କରି ଭଗବତ୍‌ସତ୍ତାରେ ଲୀନ ହୋଇଯାଆନ୍ତି । ସତେ ଯେପରି ସେମାନେ ସ୍ରଷ୍ଟାଙ୍କର ଅତି ନିକଟତମ । ତେଣୁ ସ୍ରଷ୍ଟା ବହୁଦିନ ସେମାନଙ୍କ ଅନୁପସ୍ଥିତି ବରଦାସ୍ତ କରିପାରନ୍ତି ନାହିଁ । ଏମିତି ବହୁ ଯୋଗଜନ୍ମା, ସ୍ମରଣୀୟ ବ୍ୟକ୍ତି ଅଛନ୍ତି । ସେହି ସ୍ରଷ୍ଟାଙ୍କ ଅନୁକଂପାରୁ ଜଣେ କର୍ମଯୋଗୀଙ୍କ ସହିତ ମୋର ବହୁଉପାଦେୟ ସମୟ ଅତିବାହିତ ହୋଇଥିଲେ ହେଁ ବିରାଟ ଦାରୁଣମୟ ଦୁଃଖର ସମୟ ମଧ୍ୟ ଉପସ୍ଥିତ ହୋଇଥିଲା, ଯାହାକି ବର୍ଣ୍ଣନାତୀତ ।

ଡଃ ବୈଦ୍ୟନାଥ ମିଶ୍ର ମୋର ବାଲ୍ୟବନ୍ଧୁ, ସହପାଠୀ ଓ ସହକର୍ମୀ ଥିଲେ । ବର୍ତ୍ତମାନ ଅବସ୍ଥାରେ ଲେଖନୀମୂନ ସତେ ଯେପରି ବାକ୍‌ସ୍ତବ୍ଧ ହୋଇଯାଉଛି, ଅନ୍ତରାତ୍ମା ଯେପରି ବୈଦ୍ୟନାଥ ବାବୁଙ୍କ ଅନୁପସ୍ଥିତିକୁ ଅସ୍ୱୀକାର କରୁଛି । ଯଦିଓ ବର୍ଷେ ହେଲା ସେ ଆମଠାରୁ ବିଦାୟ ନେଲେଣି । କଥାରେ ଅଛି - "Never the church, Father the God" । ପ୍ରକୃତରେ ବନ୍ଧୁ ହିସାବରେ ଆମେ ନିକଟତର ଥିଲୁ । କିନ୍ତୁ ତାଙ୍କ ଗୁଣ ବିଷୟରେ ତର୍ଜମା କରିବାକୁ କେବେ ବି ଚିନ୍ତାକରି ନଥିଲୁ । ସବୁବେଳେ ସେହି ବଇଦା, ସହପାଠୀ, ସହକର୍ମୀ ଘରପାଖର ।

ବର୍ତ୍ତମାନ ଭାବିଲେ ମନକୁ ଆସୁଛି, ସେ କେତେ ଅଦରଣୀୟ ଓ ଆଦର୍ଶ-ସ୍ଥାନୀୟ ଥିଲେ । ଏତେ ବର୍ଷର ନିବିଡ଼ ସଂପର୍କକୁ ଲେଖନୀ ମୂନରେ ଜୀବନ୍ତ କରାଇବା ସମ୍ଭବପର ନୁହେଁ ।

ପିଲାଦିନରୁ ଭଲ ଛାତ୍ର ହିସାବରେ, କଲେଜରେ ନେତା ହିସାବରେ ଏବଂ କର୍ମକ୍ଷେତ୍ରରେ କର୍ତ୍ତବ୍ୟ ପରାୟଣତା ପ୍ରକୃତରେ ଶିକ୍ଷଣୀୟ । କଟକ ମେଡ଼ିକାଲର ଛାତ୍ରାବାସରେ ଖାଇବା ପୂର୍ବରୁ, ପରେ ଖିଆବେଳେ ଯାହ ସମସ୍ତ ହସଖୁସିରେ କଟାଇବା ବାସ୍ତବରେ ମୋ ପକ୍ଷରେ ବଡ଼ ଆନନ୍ଦଦାୟକ ଥିଲା । ଦିନେ ରୁମରେ ହାଜର ନହେଲେ କୈଫିୟତ ଦେବାକୁ ପଡ଼ୁଥିଲା । ନେତା ହିସାବରେ ମେଡିକାଲ କଲେଜ ଓ ଗୃହସ୍ଥ ଜୀବନରେ ଶୀର୍ଷସ୍ଥାନକୁ ଯାଇଥିଲେ ମଧ୍ୟ ଜଗାକୁ ( ଜଗନ୍ନାଥକୁ ) ସଙ୍ଗେ ସଙ୍ଗେ ଖୋଜୁଥିଲେ । କଲେଜ function ହେଉ, ୧୯୬୪ ମସିହା ଛାତ୍ର ଆନ୍ଦୋଳନ ହେଉ କିମ୍ବା ସିନେମା ଦେଖା ସବୁଥିରେ ସାଥୀ । ଗାଁର ଶୀତଳ ଷଷ୍ଠୀ ଯାତ୍ରା ମଧ୍ୟ ବାଦ୍ ଯାଏନି । ବୈଦ୍ୟନାଥ ବାବୁ ଆମର ନେତା । ଅଧ୍ୟକ୍ଷ ଡଃ ରଘୁନାଥ ସାହୁ ତାଙ୍କ ଉପରେ ଅଭିମାନ କରନ୍ତି କାରଣ ସେ ଛାତ୍ରମାନଙ୍କ ଦୋଷକୁ ଘଣ୍ଟି ଘୋଡ଼ାଉଛନ୍ତି । ସେହିପରି 'ଓମ୍ସା'ରେ ବୈଦ୍ୟନାଥ ବାବୁ ସଂପାଦକ । ଡାକ୍ତରମାନଙ୍କ ପାଇଁ ନିଆଁକୁ ଡେଇଁବେ । ବହୁବାର ସେପରି ପରୀକ୍ଷାରେ ସେ ଉତ୍ତୀର୍ଣ୍ଣ ହୋଇଛନ୍ତି । ସରକାରଙ୍କ ନାଲିଫିତା କିମ୍ବା ଧମକରେ ନଇଁଯିବା ଲୋକ ନୁହନ୍ତି, ଯାହାକି ତାଙ୍କ ଶେଷ ଜୀବନର ଅବ୍ୟବହିତ ପର୍ଯ୍ୟନ୍ତ ଘଟିଥିଲା । ସେ ଥିଲେ ଜଣେ ସ୍ପଷ୍ଟବାଦୀ, ଅନମନୀୟ, ହୃଦୟସ୍ପର୍ଶୀ ବ୍ୟକ୍ତି । ସାଙ୍ଗେ ସାଙ୍ଗେ ସମସ୍ତେ ହୁଏତ ଉପଲବ୍ଧି କରି ନପାରନ୍ତି । ମାତ୍ର କେତେଟା ଦିନରେ ଉପଲବ୍ଧି ଅବଶ୍ୟମ୍ଭାବୀ ।

ବକ୍ତା ଓ ଲେଖକ ହିସାବରେ, ଡାକ୍ତରୀ ଛାତ୍ର ଏବଂ ପରେ ନାଗରୀକ ବିଶେଷଙ୍କ ଭାବରେ ସେ ଥିଲେ ଆମର ଆଦର୍ଶ । ଛାତ୍ରଜୀବନରେ ତାଙ୍କ ଲିଖିତ "ଆଖି" ରେଡ଼ିଓ ନାଟକ ହିସାବରେ ପୁରସ୍କୃତ ହୋଇଥିଲା । ବକ୍ତା ହିସାବରେ ବହୁ ପୁରସ୍କାରର ସେ ଅଧିକାରୀ ହୋଇଥିଲେ ।

ବହୁଗୁଣର ଅଧିକାଂଶ ହୋଇ ମଧ୍ୟ romanticism ତାଙ୍କଠାରୁ ବାଦ୍ ପଡି ନ ଥିଲା, ଯାହାକି ବୈଦ୍ୟନାଥ ବାବୁ ଓ ହେମଲତାଙ୍କ ବନ୍ଧୁତ୍ୱକୁ ନିକଟତମ କରିପାରିଥିଲା ଏବଂ ବିବାହବନ୍ଧନରେ ବାନ୍ଧି ଦେଇଥିଲା । ପାରିବାରିକ ଜୀବନ ମଧ୍ୟ ବୈଦ୍ୟନାଥ ବାବୁଙ୍କର ଅତି ଆକର୍ଷଣୀୟ ଥିଲା । ଭଉଣୀ, ଭାଉଜ, ପୁତୁରା, ଝିଆରୀଙ୍କଠାରୁ ଆରମ୍ଭ କରି ପୁଅ, ଝିଅ, ପତ୍ନୀ ସମସ୍ତଙ୍କର ଅନାବିଳ ସ୍ନେହର ସେ ଥିଲେ ଅଧିକାରୀ । ଶୀତଳଷଷ୍ଠିରେ ଗ୍ରାମଲୋକଙ୍କର ଅତିରଣୀୟ ଓ ନମସ୍ୟ "ନନ୍ଦୁ ଭାଇନା" । ଏପରି ଏକ ବନ୍ଧୁ ସେ ଥିଲେ ଯେଉଁଠିକି ସବୁକର୍ମ, ସବୁଧର୍ମ ଓ ସବୁପ୍ରକାର ଚେତନାର ପୀଠ ଥିଲା । ମୋର ମନେପଡ଼େ ପ୍ରଥମ ଗୃହକର୍ମ ସମୟରେ ମୁଁ ଓ ଇନ୍ଦୁ ( ମୋ ସ୍ତ୍ରୀ ) କେନ୍ଦ୍ରାପଡ଼ା ଯାଇଥିଲୁ ଯେଉଁଠି ବୈଦ୍ୟନାଥ ବାବୁ ଓ ହେମ ଥିଲେ । କି ଖୁସି, କି ଅଭ୍ୟର୍ଥନା ବହୁକଥା ମନେ ପକାଇବାକୁ ମନ ଚାହୁଁଛି କିନ୍ତୁ ହୃଦୟ ଚାହୁଁନି, ଫାଟିଗଲା ଭଳି ଲାଗୁଛି । ଯେତେବେଳେ ଭାବୁଛି ଏମିତି ଜଣେ ବନ୍ଧୁଙ୍କର ଅତୀତ ବିଷୟରେ ଲେଖିବା ଚାଲିଛି । ଅଥଚ, ବର୍ତ୍ତମାନ ତାଙ୍କୁ ଦେଖି ହେବନି ! ବହୁସମୟରେ, ବହୁକ୍ଷେତ୍ରରେ ଏକାଠି ହେବାର ସୁଯୋଗ ମିଳିଛି ବହୁ ଆନ୍ତରିକତା ଭିତରେ ।

ସତେ ଯେପରି ସେହି ଯୋଗଜନ୍ମା ଇଚ୍ଛାମୃତ୍ୟୁର ବର ନେଇ ଆସିଥିଲେ । ଯଦିଓ ସେହି ଦୁର୍ଭାଗ୍ୟ ଦିନଟିରେ ସବୁ ବଡ଼ ବଡ଼ ଡାକ୍ତରଖାନାରେ ଆମେ କିଛି ସମୟ ଏକାଠି କଟାଇଛୁ । ଶେଷପର୍ଯ୍ୟନ୍ତ ଅସୁସ୍ଥତାକୁ ସେ ଭ୍ରୂକ୍ଷେପ କରି ନ ଥିଲେ । ସତେ ଯେପରି କାହାର ଡାକରାରେ ଆମ କାହାରି ପ୍ରତି "ଆଖି" ନ ଫେରେଇବାକୁ ତାଙ୍କର ଇଚ୍ଛା । ଯାହାକି ୧୯୮୯ ଡିସେମ୍ବର ୯ ତାରିଖ ସନ୍ଧ୍ୟାରେ କଟକରୁ ଆସୋସିଏସନ୍ ମିଟିଙ୍ଗ୍ ସାରି ପୁରୀ ଫେରିଲା ବାଟରେ

ଘଟିଗଲା । ବନ୍ଧୁମାନଙ୍କ ଆକର୍ଷଣ, ପାରିବାରିକ ଓ ସାଂସାରିକ ବନ୍ଧନର ସ୍ନେହମମତା କାଳେ ତାଙ୍କ ମହାପ୍ରସ୍ଥାଣ ରାସ୍ତାରେ ବ୍ୟାଘାତ ସୃଷ୍ଟି କରିବ ଓ ତାଙ୍କ ଇଚ୍ଛାମୃତ୍ୟୁର ବାଟ ରୋକିବ ; ସେଥିପାଇଁ କାହାକୁ ସୁଯୋଗଦେବା ଯେପରି ତାଙ୍କ ଇଚ୍ଛାବିରୁଦ୍ଧ ଥିଲା । ସେହି କୋମଳ, ସୁନ୍ଦର, ଠାଇ ପରିଷ୍କାର ଅବସ୍ଥାରେ ଚିରସବୁଜ ( Evergreen ) ଭଳି ଦିଶୁଥିବା ଦେହବାରେ ସେ ସବୁଦିନ ପାଇଁ ଆମକୁ ଛାଡ଼ି ଚାଲିଗଲେ ।

ପରିଶେଷରେ ଏତିକି ପ୍ରାର୍ଥନା, ପରମେଶ୍ୱର ସେହି ଅମରଆତ୍ମାର ସଦ୍‌ଗତି କରନ୍ତୁ ଏବଂ ତାଙ୍କ ପରିବାର ପ୍ରତି ଆଶୀର୍ବାଦ ବର୍ଷଣ କରୁଥାନ୍ତୁ ।

—୦—

ଅସ୍ମି, ଶୈଳ୍ୟ ବିଶେଷଜ୍ଞ
ପୁରୀଜିଲ୍ଲା ମୁଖ୍ୟ ଚିକିତ୍ସାଳୟ

# ଅଭୁଲା ସ୍ମୃତି

ଡଃ ଗୁଣନିଧି ଭୂୟାଁ

ସବୁ ଯେମିତି ଓଲଟ ପାଲଟ ହୋଇଗଲା ଏଇ କେଇଟା ଦିନରେ । ମାନସିକ ଯନ୍ତ୍ରଣା ଭିତରେ ଲେଖିବାକୁ ଇଚ୍ଛା ହେଉନି । କେବଳ ଶ୍ରଦ୍ଧା ଓ ଭକ୍ତିର ସ୍ମୃତି ଅର୍ଘ୍ୟ ଢାଳି ରହିଲି । ଏ ବର୍ଷକ ଭିତରେ ବୈଦ୍ୟନାଥ କଥା ମନେ ନ ପଡ଼ିଥିବା ଦିନ ମୋର ମନେ ନାହିଁ । ଖାଲି ଇଚ୍ଛା ଯେ ତା ପାଖକୁ ବାରମ୍ବାର ଦୌଡ଼ି ଯିବାକୁ । ଏଭଳି ଏକ ଭାବନା ଜୀବନରେ ଆଉ କାହାରି ପାଇଁ ହୋଇନି । ଏତେ ଆପଣାର, ଏତେ ଅନ୍ତରଙ୍ଗ, ମୋ ସାନଭାଇଠାରୁ ଅଧିକ । ସେଇ ଦିନରୁ ଆଜଯାଏ ତା' ପିଲାପିଲି ଓ ହେମକୁ ମୁହଁ ଉଠାଇ ଚାହିଁବାର ସାହସ ପାଉନି । ବେଳେ ବେଳେ ପ୍ରସୂତି ଓ୍ୱାର୍ଡ଼ରେ ରାଉଣ୍ଡ ଦେଲାବେଳେ ତା ଫଟୋ ପାଖରେ ଠିଆହୋଇ ଅଶ୍ରୁ ଢାଳେ । ସବୁବେଳେ ମୋତେ ଚାହିଁ ହସୁଛି ଯେପରି ।

କୋଡ଼ିଏ ବର୍ଷର କଥା । ମୁଁ ଦେଖିଛି ତା'ର ସ୍ୱାଭିମାନ, ଦେଖିଛି ତା'ର ଜିଦ୍ । ଅନର୍ଗଳ ବକ୍ତୃତା ଓ ଅଟଳ ଯୁକ୍ତି ସାଙ୍ଗକୁ କି ଅବିଶ୍ୱାସ୍ୟ ଫେଲୋଫିଲିଙ୍ଗ ! ଡାକ୍ତରୀ ଜାତି ପାଇଁ, ଡାକ୍ତରୀ ବୃତ୍ତି ପାଇଁ ଓ ପରୋପକାର ପାଇଁ, ଯେପରି ଅକୁଣ୍ଠିତ ସେବା, ଉତ୍ସର୍ଗ ! ଓମସା ପ୍ରତି ଅନୁରକ୍ତି, ଉତ୍ସର୍ଗ ଓ ଅବିଶ୍ରାନ୍ତ ପରିଶ୍ରମ ! ମୋ ସାଙ୍ଗରେ ବହୁବାର କୋଣେ କୋଣେ ବୁଲି ବୁଲି ଏକ ନିସ୍ପନ୍ଦ ଚେତନାହୀନ ଓ ସ୍ୱାର୍ଥେଚ୍ଛୁ ଗୋଷ୍ଠୀରେ ପ୍ରାଣର ସଂଚାର କରିଛି । ଯେତେବେଳେ ପ୍ରତିବାଦ କରିଛି, ବଜ୍ରଗମ୍ଭୀର ସ୍ୱରରେ ହୁଙ୍କାର ଦେଇଛି । ସମସ୍ତେ ଖସିପଡ଼ିଲା ପରେ ବି ଏକୁଟିଆ ଠିଆ ହୋଇଛି । "ଏକଲା ଚଲୋରେ" । ସେଦିନ କଟକ ମେଡ଼ିକାଲ କଲେଜରେ ଯେଉଁ ବାଦ ବିବାଦରେ ଓମସା ମିଟିଂ ହେଲା ତାହା ମଧ୍ୟ ଥିଲା ତା'ର ଦୃଢ଼ ସଂକଳ୍ପର ଫଳ । ହେମର ଅଭିଯୋଗ ଯେ ସେ ମିଟିଂକୁ ମୁଁ ତାକୁ ଆଣିଥିଲି । ଦୋଷୀ ବୋଲି ଲାଗୁଛି ସିନା, କିନ୍ତୁ ସତରେ ସେ ମିଟିଂକୁ ବୈଦ୍ୟନାଥ ମୋତେ ଆଣିଥିଲା । ତା'ର

ଆଖି ଆଗରେ ଏକ ଯୁଗର ଅବସାନ ହୋଇ ସେଦିନ ଏକ ଅସଂଯତ, ଅବୁଝା ଯୁଗର ତାଣ୍ଡବ ସେ ଦେଖିଲ । ସୃଷ୍ଟି ସ୍ରଷ୍ଟାଙ୍କୁ ଅସ୍ୱୀକାର କଲା । ସେ କାଳ ଦ୍ୱିପ୍ରହରରେ ଆଉ ଫେରି ପାରିଲେ ନାହିଁ । ସେଇ ଦୁଃଖରେ, ସାଥୀର କାନ୍ଧରେ ମଥାରଖି ଶୋଇପଡ଼ିଲେ । ଆଉ ସବୁଦିନ ପାଇଁ ଶୋଇ ପଡ଼ିଲା ତାର ମାନସ ସନ୍ତାନ ଓମ୍‌ସା ।

ତା'ର କାର୍ଯ୍ୟ କଳାପ ଏଭଳି ପର୍ଯ୍ୟାପ୍ତ ଯେ ଡାକ୍ତରୀ ବିଦ୍ୟା ଓ ବୃତ୍ତିଠାରୁ ଆରମ୍ଭ କରି ସମାଜ ସେବା, ସ୍ୱାଭିମାନଠାରୁ ଆରମ୍ଭ କରି ଅନ୍ୟାୟ ବିରୁଦ୍ଧରେ ଝଙ୍କାର ଓ ଅକାଟ୍ୟ ଯୁକ୍ତି ଓ କଥା କହିବାର ଶୈଳୀ ବିଷୟରେ ସବୁ ମନେପଡ଼େ । ଏକ ଅପରାଜିତ ଚରିତ୍ର କାହାରିଠାରେ ଦେଖିନି । କାହାପାଇଁ ? ଯାହାଙ୍କ ପାଇଁ ସେ ଜୀବନ ଦେଲ, କାହିଁ କେହିତ କାନ୍ଦୁନାହାନ୍ତି, ଅନୁତାପ ବି କରୁନାହାନ୍ତି । ସେ ଅଭିମାନ କରି ମୋତେ ଏକୁଟିଆ କରି ଚାଲିଗଲ । ମୁଁ କେବଳ ରହିଗଲି ଦେଖିବାକୁ । ଯାହାଙ୍କ ପାଇଁ ପ୍ରାଣ ଦେଇ ଖଟିଥିଲୁ, ଯେଉଁମାନେ ଆମ ରକ୍ତ ବଦଳରେ ଉପକାର ପାଇଛନ୍ତି, ସେଇମାନେ ହିଁ ଘୋଡ଼ାମୁହାଁ ଅଧର୍ମୀ ସାଜିଗଲେ ।

ମୋର ସାରଥି ଚାଲିଗଲ । କୋଡ଼ିଏ ବର୍ଷରେ ଉଣେଇଶି ଥର ଧର୍ମଘଟ ଡାକରା ଦେଇଛୁ ସାଥୀ ହୋଇ, ଦଶଥର ଧର୍ମଘଟ କରିଛୁ ସାଥୀ ହୋଇ । କି କୃତଘ୍ନ ଏ ଡାକ୍ତର ଗୋଷ୍ଠୀ ? କି ବ୍ୟକ୍ତି କେନ୍ଦ୍ରିକ ! କି ସ୍ୱାର୍ଥପରତା । ଆଉ ସହିପାରିଲ ନାହିଁ ସେ । ବାରମ୍ବାର ଏଇ କଥା କହି କହି ତା'ର ଅନ୍ତର ଆତ୍ମା ମୋ ପାଖରେ କାନ୍ଦି ଉଠୁଛି । ଲୋକେ, ରୋଗୀ ସାଥୀ ସମସ୍ତେ ମନେପକାଉଛନ୍ତି । ମନେ ପକାଉଛି ଅତ୍ୟାଚାରୀ ଓ କ୍ଷମତା ଅନ୍ଧ ଶାସକ ବର୍ଗ । କିନ୍ତୁ ମୋର, ହେମର, ତା'ର ପିଲାମାନଙ୍କର ଅପୂରଣୀୟ କ୍ଷତି ରହିଗଲା ।

ଖାଲି ଇଚ୍ଛା ହେଉଛି ତାକୁ ଧରି କାନ୍ଦିବାକୁ । ତା'ର ସ୍ମୃତିହିଁ ମୋର ପାଥେୟ । ହେମ ଓ ତାର ପିଲାମାନେ ଏକ ମହାନ୍ ଆତ୍ମାର ଦାୟାଦ । ବୈଦ୍ୟନାଥ କ'ଣ ମରିପାରେ ? ସେ ପରା ମରଣଜୟୀ । ( ଅଶ୍ରୁ, ଶ୍ରଦ୍ଧା, ଭକ୍ତି ଓ ସମ୍ମାନର ଅର୍ଘ୍ୟ ଡାକୁଛି )

*** ଜିଲ୍ଲା ମୁଖ୍ୟ ଚିକିତ୍ସକ, ପୁରୀ

# ସହପାଠୀ ବୈଦ୍ୟନାଥ

ପ୍ରଫେସର **ଶ୍ରୀ ଗଣେଶ୍ୱର ମିଶ୍ର**

ପୁରୀର ସୁପରିଚିତ ଡାକ୍ତର ହୃଦ୍‌ରୋଗ ବିଶେଷଜ୍ଞ ବୈଦ୍ୟନାଥ ମିଶ୍ରଙ୍କର ଗତବର୍ଷ ଡିସେମ୍ବର ୯ ତାରିଖରେ ମାତ୍ର ଛପ୍ପନବର୍ଷ ବୟସରେ ପରଲୋକ ଯଥାର୍ଥରେ ଏକ ଦାରୁଣ ବ୍ୟଥାଦାୟକ ଘଟଣା । ସେ ଥିଲେ ମୋର ବାଲ୍ୟବନ୍ଧୁ ଓ ଆମେ ଏକାଠି ପୁରୀ ଜିଲ୍ଲାସ୍କୁଲ ଏବଂ ପରେ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅଧ୍ୟୟନ କରିଥିଲୁ । ସେ ଖୁବ୍ ମେଧାବୀ ଓ ତୀକ୍ଷ୍ଣବୁଦ୍ଧି ସମ୍ପନ୍ନ ଛାତ୍ର ଥିଲେ । ଡାକ୍ତରୀ ପଢ଼ି ସେ ସଫଳତାର ସହିତ ରୋଗୀମାନଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । କେବଳ ସେତିକି ନୁହେଁ, ସାହିତ୍ୟ ଓ ସଙ୍ଗଠନ କ୍ଷେତ୍ରରେ ମଧ୍ୟ ତାଙ୍କର ଦକ୍ଷତା ଥିଲା । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଛାତ୍ର ଥିବା ସମୟରେ ସେ "ଆଖି" ନାମକ ନାଟକ ଲେଖି ମଞ୍ଚସ୍ଥ କରାଇଥିଲେ । ପୁରୀ ଜିଲ୍ଲା ସ୍କୁଲରେ ପଢ଼ୁଥିବା ସମୟରେ ହାତଲେଖା ପତ୍ରିକାଟିଏ ମଧ୍ୟ ସମ୍ପାଦନା କରିଥିଲେ । ମେଡିକାଲ କଲେଜ ୟୁନିଅନର ସେ ସମ୍ପାଦକ ନିର୍ବାଚିତ ହୋଇଥିଲେ ଏବଂ ବିଭିନ୍ନ ଛାତ୍ର ସଙ୍ଗଠନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଥିଲେ । ମେଳାପୀ ବ୍ୟବହାର ସମସ୍ତଙ୍କ ନିକଟରେ ତାଙ୍କୁ ପ୍ରିୟ କରିଥିଲା ।

ଡାକ୍ତର ମିଶ୍ରଙ୍କ ଜନ୍ମସ୍ଥାନ ପୁରୀ ଜିଲ୍ଲାର ବୀରନରସିଂହପୁର ଗ୍ରାମ । ତାଙ୍କ ବଡ଼ଭାଇଙ୍କ ଅକାଳ ବିୟୋଗ ପରେ ସମଗ୍ର ଯୌଥ ପରିବାରର ଦାୟିତ୍ୱ ମୋଟାମୋଟି ତାଙ୍କ ଉପରେ ପଡିଥିଲା । ଡାକ୍ତର ବୈଦ୍ୟନାଥ ମିଶ୍ରଙ୍କ ଆକସ୍ମିକ ବିୟୋଗ ତାଙ୍କ ପରିବାର ପ୍ରତି ଯେ ଭୟଙ୍କର ଆଘାତ, ତାହା ଭାଷାରେ ପ୍ରକାଶ କରିବା କଠିନ । ସଂକ୍ଷିପ୍ତ ହେଲେ ହେଁ ଡାକ୍ତର ମିଶ୍ରଙ୍କ ଜୀବନକାଳ ସାର୍ଥକ ଓ ଅନୁକରଣୀୟ । ତାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧା ଅର୍ପଣ କରୁଛି ।

ବାଣୀବିହାର, ଭୁବନେଶ୍ୱର

# ଭକ୍ତି ଅର୍ଘ୍ୟ

ଶ୍ରୀମତୀ ପ୍ରମିଳା ମିଶ୍ର

ଏ ଅନନ୍ତ ଆକାଶ ବିସ୍ତୃତି
ଏ ଅନନ୍ତ ସମୁଦ୍ରର ଗଭୀରତା
ଉତ୍ତାଳ ତରଙ୍ଗ ଆଉ
କମନୀୟ ମଳୟର ଦିବ୍ୟକାନ୍ତ
ଯା'ର ପ୍ରାଣେ ଯା'ର ମନେ—
ଯା'ର ହୃଦେ ରହିଥିଲା ପୂର୍ତ୍ତି
ସିଏ ଆଜି କାହିଁ କେତେ ଦୂରେ ?
ଦୂରେ ନୁହେଁ, ସ୍ମୃତି ତା'ର ଆଜ ଏ ଆମ୍ଭଠାରେ *

ଇନ୍ଦ୍ର-ଐରାବତ ମର୍ତ୍ତ୍ୟେ ତାର ଜଳଧାର
ବର୍ଷାମିତ ସିଏ ଅବା ଆଜ
କ୍ଲାନ୍ତ ହେବେ ସ୍ପର୍ଶି ନାହିଁ ଅଙ୍ଗ ଯା'ର
ସିଏ ଆଜ ସାଗରର ଫେନିଳ ଲହରେ
ବହିନେଲା ସତେ କିବା ଅନନ୍ତ-ଶୟନ
ସିଏ ଆଉ ସାଧାରଣ ଦୃଷ୍ଟି ପଥାରୂଢ଼ ନୁହେଁ
ତଥାପି ମନ-ଯାନେ କୋମଳାଙ୍ଗୀ କମଳା ସେବଇଁ
ଅଗମ୍ୟ ଯେ ଅବୋଧ ଯେ ଭାବ
ସେଇ ଭାବେ ଆମ୍ଭେ ସେବେ
ନୟନର ଅଶ୍ରୁ-ଅର୍ଘ୍ୟ ଦେଇ *

ହେ ପରମପୂଜ୍ୟ ! ହେ ମହାନପ୍ରାଣ !
ସେଇ ପଦେ ଆଜ ଲୋଟେ
ଏଇ ଆମ ମଥା
ହେମ-ପୁଷ୍ପ ଅରଚନା ଆଶେ
ଅସରନ୍ତି ବ୍ୟଥା

ନବୋଦ୍ଗତା

କାଳର ସମୁଦ୍ରେ ସବୁ ଯାଏ ଲୀନ ହୋଇ
ତଥାପି ଏ ମନ କାନ୍ଦେ ଭୁହାଇ ଭୁହାଇ
ଅମା ଅନ୍ଧକାରେ କେବେ
ହସଇକି ଚନ୍ଦ୍ର ?
ବ୍ୟଥା-ଅନ୍ଧକାରେ କେବେ ହସେ କି ଜୀବନ ?
ତୁଷରଚ୍ୟୁତା ଲତା-ବୁକେ ହସେ କି ସପନ ?
ତବ ପଦେ ଲୋଟେ ମଥା
ମନେ ଆଜି ଖାଲି ଅଭିମାନ *

ସ୍ମୃତି ତବ ଶ୍ରାବଣୀ ସୃଜଇଁ
ଦୁଇ ଆଖି କଳାଡୋଳା—
ସମୁଦ୍ର ବକ୍ଷରେ
ମାମି, ମିଳି, ସ୍ୱପ୍ନ ଗ୍ରନ୍ଥିରେ
ପୁଣି—
ଅନେକ ଅନେକ ତବ
ପ୍ରିୟଜନ, ପରିଜନ ଆତ୍ମାରେ ଆତ୍ମାରେ *

ଭାରତର ସୃଷ୍ଟି କୃଷ୍ଟି ଶିଖାତବ ବଚ୍ଛେଦରେ
ମ୍ଲାନଧର୍ମୀ ସାଜେ
କେଶବେ ସେ ଅଶେଷ ମିନତି
ବାହୁଡ଼ା ପଥକୁ ଚହିଁ
ନାରାୟଣେ ଢଳେ *

ପ୍ରୀତି-ସ୍ନିଗ୍ଧା ଲତା ଆଜି ବିଷାଦିତ ପ୍ରାଣେ
ଶରତରେ ଦେଖା ପଦେ
ବାଢ଼ିଛି ମିନତି
ଫେରିଆସୁ ତବ-ପ୍ରୀତି-ଅନ୍ନପୂ ବଭୂତ

ଆଶାର-ମୁକୁଳ ଆଜ ଶ୍ରାବଣେ ସେବଇ
ବନଲତା ରମେଟରେ ଗୁହାଣ ରଚଇଁ
ସ୍ନେହ-ଲତା ହସୁ ତବ ଶ୍ରଦ୍ଧାର ସ୍ମରଣେ
ବିଷାଦିତ-ବ୍ୟଥିତ ଏ ଅନୁଗତ ଜନ—

କୋଟିପ୍ରାଣ ଆଜି ତବ ବାହୁଡ଼ା ମନାସେ *

ହେ ନ୍ୟାୟଧର୍ମୀ ପ୍ରଶାନ୍ତର ମୂର୍ତ୍ତି !
ବେଗମତ୍ତ ସ୍ରୋତସ୍ୱିନୀ ଗତି !
ଶିଶୁ-ମାତୃ-ଦେବୁ ଆଜ ବାବୁନର ମଞ୍ଜୁ ମନ-ବନ
ସବୁଜ-ବିଭୂତି !
ହେ ଶ୍ରେୟଧ୍ୟେୟ ଧନ୍ୱନ୍ତରି ।
ହେ ସୃଷ୍ଟିର ନବୋନ୍ମେଷକାରୀ,
ମାତୃଗର୍ଭ ଭ୍ରୂଣ ଆଜି
ଆକୁଳେ ଚିତ୍କାରେ
ଡାକେ ଭୂମି ସ୍ପର୍ଶିବାକୁ ବ୍ୟଥିତ ଅନ୍ତରେ
ହେ ଆଲୋକ । ଦିବ୍ୟ ଜ୍ୟୋତି ।
ଶୁଣେନାକି ଏଇ ଡାକ ହେ ଚରମ ପିତା ।
କାହିଁଗଲ ଅସମୟେ, ସେ ଯେ ଅରକ୍ଷିତା *

ଅଶେଷ ପରାଣେ ଯିଏ ଭରୁଥିଲ
ବିଶ୍ୱାସର ଗତି
ଜୀବନେ ଯୌବନେ ଯିଏ
ଭରୁଥିଲ ଅଶେଷ ବିଭୂତି
ତା ନିଃଶ୍ୱାସ ଉଭେଇଯିବା କାଳେ
ଜଗନ୍ନାଥ ମୌନ କିବା ହୋଇଲେ ଅଚଳେ
ପ୍ରଭାତରେ ପ୍ରାଣପ୍ରିୟା ବାଟେଇଲ ଯା'ରେ
ସଂଧ୍ୟାର ବାହୁଡ଼ା ପଥ ପ୍ରତୀକ୍ଷା ତା ପାଇଁ
ଜୀବନର ପ୍ରତୀକ୍ଷାରେ ଗଲସିନା ରହି *

ଆଜ ଶ୍ରାଦ୍ଧ ବାର୍ଷିକୀରେ—
ଆଖି ଲୁହେ ଧୋଇ ଦେଇ ପଦ
ତୋହର ମାଳାମ୍ବରୀ ପାଟେ
ଶ୍ରୀଅଙ୍ଗକୁ ଜଡ଼ାଇ ସବଗେ
ଶ୍ରଦ୍ଧାର ଆସନ ଦେଉ
ଥାପିବାକୁ ଅଙ୍ଗ
ମମତା କୈବଲ୍ୟ ଅର୍ପୁ
ଭୁଞ୍ଜିବାକୁ ମୋଦେ
ଦେନା ହେଉ ଭକ୍ତି—ପ୍ରୀତି-ନତ
ନଇବେଦ୍ୟ *



ପୁଷ୍ପ

# ଶେଷ ଦେଖା

ଡଃ ସେବା ମହାପାତ୍ର

ବ୍ୟବହାରରେ ବହୁତ ଭଦ୍ର ଓ କଥାବାର୍ତ୍ତାରେ ସ୍ନେହୀ ଥିଲେ ବଇଦା ଭାଇନା । ଆବଶ୍ୟକ ପଡ଼ିଲେ ଖୁବ୍ ମର୍ମସ୍ପର୍ଶୀ ଭାଷଣ ଦେଇ ଛାତ୍ରସମାଜ ବା ଜନସମାଜକୁ ଉତ୍ସାହିତ କରିପାରୁଥିଲେ । ଲେଖନୀ ମୁନର ଶକ୍ତି କମ୍ ପାରଦର୍ଶିତା ନଥିଲା । ତା ସହିତ ଡାକ୍ତର ଭାବରେ ବେଶ୍ ସୁନାମ ଥିଲା । ସେ ଥିଲେ ଜଣେ ସ୍ତ୍ରୀ ଓ ପ୍ରସୂତି ରୋଗ ବିଶାରଦ । ଏହି ବିଷୟରେ ତାଙ୍କର ପାରଦର୍ଶିତା ଓ ରୋଗିଣୀର ଶରୀରରେ ଅସ୍ତ୍ରୋପଚାରର ନିପୁଣତା ବହୁପ୍ରଶଂସିତ । ସେ ଚାକିରି କରିଥିବା ବିଭିନ୍ନ ସ୍ଥାନରେ ତାଙ୍କର ସୁନାମ ରହିଆସିଛି । ମୁଁ ସେ ପରିବାର ସହିତ ଓ ସେହି ବ୍ୟକ୍ତିମାନଙ୍କ ସହିତ ବିଭିନ୍ନ ସମୟରେ ଏକାଠି କାମ କରିବାର ସୁଯୋଗ ପାଇଛି । ସାଧାରଣ ଜୀବନ ପ୍ରବାହ ମଧ୍ୟରେ ଅସାଧାରଣ ବ୍ୟକ୍ତିତ୍ୱ ଖୁବ୍ କମ୍ ଲୋକଙ୍କ ପାଖରେ ଦୃଷ୍ଟିଗୋଚର ହୁଏ । ମୁଁ ଯେତେବେଳେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ପାଠପଢ଼ିବାକୁ ଗଲି ମତେ ମୋର ଉପରଭାଇନା ତାଙ୍କର ପରିଚିତ ମୁଷ୍ଟିମେୟ ବନ୍ଧୁମାନଙ୍କ ସହ ମୋତେ ଚିହ୍ନାକରାଇ ଦେଇଥିଲେ । ସେଥିରେ ବଇଦା ଭାଇନା ଥିଲେ ପ୍ରଥମ । ଆବଶ୍ୟକ ପଡ଼ିଲେ ସେମାନଙ୍କର ସାହାଯ୍ୟ ନେବାକୁ ମଧ୍ୟ କହିଥିଲେ । ତେଣୁ ମୁଁ ତାଙ୍କୁ ଜାଣିଲା ଦିନଠାରୁ ଭାଇନା ବୋଲି ସମ୍ବୋଧନ କରୁଥିଲି । ସେ ଥିଲେ କଲ୍ୟାଣ ଭାଇନାଙ୍କର ପୁରୀଜିଲ୍ଲା ସ୍କୁଲର ସାଥୀ । ଠିକ୍ ବର୍ଷେପରେ ୧୯୬୪ ମସିହା ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟ୍ରାଇକ୍ ହେଲା । ମେଡ଼ିକାଲ କଲେଜ ଏଥିରେ ମୁଖ୍ୟଭୂମିକା ନେଇଥିଲା ଓ ବୈଦ୍ୟନାଥ ଭାଇନା ମୁଖ୍ୟଭୂମିକାରେ ଥିଲେ । ଥରେ ପିଲାଙ୍କ ମଧ୍ୟରେ ଠିଆହୋଇ ଭାଷଣ ଦେଲାବେଳେ ତାଙ୍କର ଭାଷା ଓ ଭାବର ଆକର୍ଷଣରେ ସମସ୍ତ ଛାତ୍ରଛାତ୍ରୀ ମେଣ୍ଟବାନ୍ଧି ଶ୍ରେଣୀ ବର୍ଜନ କରି ଆନ୍ଦୋଳନରେ ଯୋଗ ଦେଇଥିଲେ । ତାପରେ ବିଭିନ୍ନ ଆଲୋଚନା କାର୍ଯ୍ୟପନ୍ଥା ନିର୍ଦ୍ଧାରଣ

ଇତ୍ୟାଦି ପ୍ରସ୍ତୁତ ହେଉଥିଲା । ମୁଁ ସେତେବେଳେ ଏହିସବୁ ଆନ୍ଦୋଳନାତ୍ମକ କାର୍ଯ୍ୟଗୁଡ଼ିକୁ ବେଶ୍ ଉପଭୋଗ କରୁଥିଲି ଓ ଭାଗମଧ୍ୟ ନେଉଥିଲି । ତାପରେ ସେ ମେଡ଼ିକାଲ କଲେଜର ଛାତ୍ର ୟୁନିଅନର ସେକ୍ରେଟେରୀ ହେଲେ । ଏହିପରି କାର୍ଯ୍ୟ କରୁଥିଲେ ମଧ୍ୟ ପାଠ ପଢ଼ାରେ ସେ କେବେ ଅବହେଳା ପ୍ରଦର୍ଶନ କରୁନଥିଲେ ଓ ବେଶ୍ ଭଲ ନମ୍ବର ରଖି ପରୀକ୍ଷାଗୁଡ଼ିକରେ କୃତକାର୍ଯ୍ୟ ହେଉଥିଲେ । ମେଡ଼ିକାଲ କଲେଜର ଛାତ୍ର ଜଣେ ରେଗୁଲର ଭାବେ ପରୀକ୍ଷାରେ ପାଶ୍ କରିବାଟା ସେତେବେଳ ସମୟରେ ଗୋଟେ ସଫଳ କାର୍ଯ୍ୟରେ ପରିଗଣିତ ହେଉଥିଲା । କାରଣ ଖୁବ୍ କମ୍ ଛାତ୍ର ଏହିପରି ଭାବେ ଡାକ୍ତରୀ ପରୀକ୍ଷାରେ ପାଶ୍ କରିଥାନ୍ତି । ତେଣୁ ଏହାଯେ ନିଶ୍ଚିତ ଭାବରେ ତାଙ୍କର ମେଧା ଶକ୍ତିର ପ୍ରମାଣ ଏବଂ ଏଥିରେ କିଛି ଦ୍ୱିମତ ନାହିଁ । ପୁନଶ୍ଚ ୧୯୬୧ ମସିହାରେ ମୁଁ ଭାଇନାଙ୍କ ସହିତ ଏକାଠି ପୋଷ୍ଟଗ୍ରାଜୁଏଟ୍ କରିବାର ସୁଯୋଗ ପାଇଲି । ସେତେବେଳର ଘଟଣାମାନ ସବୁବେଳେ ଆଖି ଆଗରେ ନାଚିଯାଉଛି । ଏକାଠି ପାଠପଢ଼ିଲା ବେଳର ଅନାବିଳତା, ରୋଗୀ ଦେଖି ତା' ବିଷୟରେ ଆଲୋଚନା କରିବା, ତର୍କ କରିବା, ନୂଆ ନୂଆ କଥା, ଲାଇବ୍ରେରୀରୁ ପଢ଼ି ଆସି ପରସ୍ପର ନିକଟରେ ଝାଡ଼ିବା ଇତ୍ୟାଦି ।

ଏହାପରେ ବିଭିନ୍ନ ସମୟରେ ବଡ଼ଦା ଭାଇନା ଓମ୍ସା କର୍ମକର୍ତ୍ତା ହୋଇ ରହିଲେ ଓ ମୋର ମଧ୍ୟ ତାଙ୍କ ସହିତ ପୁରୀ ଡାକ୍ତରଖାନାରେ କାମ କରିବାର ସୁଯୋଗ ମିଳିଥିଲା । ସେତେବେଳେ ସେ ପୁରୀରେ ଗାଇନକ୍ ସ୍ପେଶାଲିଷ୍ଟ ଥିଲେ ଓ ହେମନାଗ ଥିଲେ ଆସିଷ୍ଟାଣ୍ଟ ସର୍ଜନ । ଆମେ ପାଖ ପାଖ ସରକାରୀ କ୍ୱାର୍ଟରରେ ରହୁଥିଲୁ । ପାରିବାରିକ ଜୀବନଯାପନ ପ୍ରଣାଳୀ ସହିତ ଡାକ୍ତରଖାନାର ମାତ୍ରାଧିକ କାର୍ଯ୍ୟ ଓ ସ୍ତ୍ରୀରୋଗ ବିଶେଷଜ୍ଞ ଓ ସାଧାରଣ ଡାକ୍ତରର ବ୍ୟବଧାନ ଇତ୍ୟାଦି କିଛିଟା ପରିମାଣରେ ପରସ୍ପରର ଦୂରତା ବୃଦ୍ଧି କରିଥିଲା । ସେତେବେଳେ ସେ OMSA ଓ ଓଡ଼ିଶା ଗାଇନକ ଆସୋସିଏସନର ନେତା ଥିଲେ ଓ ତାଙ୍କର ସଙ୍ଗଠନରେ ଦୁଇ ଦୁଇ ଥର ପୁରୀରେ ବାର୍ଷିକ ଅଧିବେଶନମାନ କରାଯାଇ

ପାଉଥିଲି । ପୁରୀ ତାଙ୍କର ଘର ନଥିଲା, ପିଲାବେଳର ଖେଳଘର ଥିଲା । ସେ ପୁରୀକୁ ବେଶ୍ ଭଲପାଉଥିଲେ । ତେଣୁ ସମ୍ବଲପୁରରୁ ପୁନଶ୍ଚ ପୁରୀ ଫେରି ଆସିଥିଲେ । ଗଲାବର୍ଷ ପୁରୀରେ ଆମର ଗାଇନକ ଡାକ୍ତରମାନଙ୍କର ବାର୍ଷିକ ଅଧିବେଶନ ହଲାଡେ଼ ରିସର୍ଟରେ ତାଙ୍କ ନେତୃତ୍ୱରେ ସଙ୍ଗଠିତ ହୋଇଥିଲା । ସକାଳୁ ବିଭିନ୍ନ କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ ହୋଇ ଭାଇନା ହାଲିଆ ହୋଇ ଯାଇଥିଲେ । ପ୍ରାୟ ୫ଟା ବେଳକୁ ମୁଁ ବାହାରେ ଆସି ବସିଥିଲି । ଭାଇନା ଆସି ବସିଲେ । ତାପରେ ଘରଦ୍ୱାର ପରିବାର ବିଷୟରେ କଥାବାର୍ତ୍ତା । ସେତେବେଳେ ଶିଶୁର ବାହାଘର କଥା କହିଲେ । ଶିଶୁର କିପରି ଝିଅଟେ ଦରକାର ସେ ବିଷୟରେ କିଛି କଥା କହି ଆମ୍ଭମାନଙ୍କୁ ଥଟ୍ଟା କରି କହିଲେ—ତୁମେ ସବୁ ଗାଁଉଲୀଟିଏ, ଚା, କଫି ବି ଠିକ୍ ଭାବେ ଦେଇ ଜାଣନି । କିନ୍ତୁ ଶିଶୁ ପାଇଁ ଯେଉଁ ଝିଅ ଦେଖିବ ସେ ଯେପରି......... । ଏହାଶୁଣି ଆମେ ସବୁ ହସିଲୁ । ପ୍ରକୃତରେ ଶିଶୁ ( ତାଙ୍କ ପୁତୁରା ) କୁ ସେ ବହୁତ ଭଲ ପାଆନ୍ତି । ସେ ହେଉଛି ଆମମାନଙ୍କର ଆଜ୍ଞାବହ ପୁଅ । ଶିଶୁର ମାଇଁ ହେଉଛନ୍ତି ମୋର ବାନ୍ଧବୀ । ତେଣୁ ମୁଁ ମଧ୍ୟ ଶିଶୁକୁ ମୋର ପୁଅ ଦୃଷ୍ଟିରେ ଦେଖେ । ଏହିପରି ହସଖୁସିରେ ସେଦିନ ଭାଇନାଙ୍କଠୁ ବିଦାୟ ନେଇ ଆସିଲି । ଆଉ ମୋର ତାଙ୍କ ସହିତ ଦେଖା ହୋଇ ପାରିନି । କଟକଠାରେ "ଓମ୍ସା"ର ରଜତଜୟନ୍ତୀ ମିଟିଙ୍ଗ୍‌କୁ ସେ ଆସିଥିଲେ । "ଓମସା" ପ୍ରତି ତାଙ୍କର ଅତ୍ୟନ୍ତ ମମତା ଥିଲା ଓ ସେହି ଅଧିବେଶନରୁ ପୁରୀ ଫେରିବା ବାଟରେ ସେ ଗୁରୁତର ଯନ୍ତ୍ରଣା ଅନୁଭବ କରି ଢଳି ପଡ଼ିଲେ । ଆମେ ଏ ଦୁଃଖଦାୟକ ଦୁଃସମ୍ବାଦ ଶୁଣି ଅବିଶ୍ୱାସ କଲୁ, ଯଦିଓ ଏହା ସତ୍ୟ ଥିଲା । ସମବେଦନା ଜଣେଇବାକୁ ଭାଷା ନାହିଁ । 'ଓମସା' ପାଇଁ ତାଙ୍କର ଅତୁଳନୀୟ ଅବଦାନ ଭୁଲିହେବନି ।

ବର୍ତ୍ତମାନ ହେମ ନାନୀଙ୍କୁ ଘଇନାଙ୍କ ପରି ଲୋକ ଉପଦେଶ ଦେବାକୁ ନାହାନ୍ତି । କିନ୍ତୁ ତାଙ୍କର ଦୁଃଖ ସୁଖର ସାଥୀ, ମାମୀ, ମିଳି, ପୁପୁନ ଓ ସଂପର ଶିଶୁ ରହିଛନ୍ତି । ହେମ ନାନୀ ଜଣେ ସ୍ୱାଭିମାନୀ ମହିଳା । ତେଣୁ ଯେତେ ଝଡ଼ଝଞ୍ଜା ଆସିଲେ ମଧ୍ୟ ଦମ୍ଭର ସହିତ ତାର ମୁକାବିଲା କରିପାରିବେ, ଏ ବିଶ୍ୱାସ ମୋର ଅଛି । ଭଗବାନ ତାଙ୍କୁ ଧୈର୍ଯ୍ୟ ଓ ବଳ ଦିଅନ୍ତୁ । ସେ ଯେପରି ନିଜର ବଳ ଓ ବୁଦ୍ଧିର ପ୍ରୟୋଗ ଓ ଭଗବାନଙ୍କ ଆଶୀର୍ବାଦ ନେଇ ପିଲାମାନଙ୍କୁ ମଣିଷ କରିବେ ।

***

ସ୍ତ୍ରୀ ଓ ପ୍ରସୂତି ରୋଗ ବିଶେଷଜ୍ଞ
ଭୁବନେଶ୍ୱର

# “ଭାଉନା”

ଡଃ ରେଣୁ ମହାନ୍ତି

କିଛିଦିନ ତଳେ ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ ତଥା ଗବେଷକ ଅଧ୍ୟାପକ ଗୌରୀକୁମାର ବ୍ରହ୍ମାଙ୍କଠାରୁ ଅନୁରୋଧ ମୂଳକ ପତ୍ରଖଣ୍ଡିଏ ପାଇଲି—ସ୍ୱର୍ଗତ ପ୍ରସିଦ୍ଧ ବିଶେଷଜ୍ଞ ଚିକିତ୍ସକ ମୋର ଅଗ୍ରଜ ତୁଲ୍ୟ ଡଃ ବୈଦ୍ୟନାଥ ମିଶ୍ରଙ୍କ ସଂପର୍କରେ କିଛି ଲେଖିବା ପାଇଁ । ମନଟା ବଡ଼ ଉଦାସ ଲାଗିଲା - କଣ ଲେଖିବି - କାହାପାଇଁ ଲେଖିବି - ଭାଇନା (ବୈଦ୍ୟନାଥ) ମରିଯିବାର ପ୍ରା ଭିତରେ ବର୍ଷଟିଏ ପୂରିଗଲାଣି - କିନ୍ତୁ ମନକୁ ଯେତେ ବୁଝେଇଲେ ବି ବିଶ୍ୱାସ ହେଉନି - ଭାଇନା ଆମ୍ଭମାନଙ୍କ ଗହଣରୁ ସବୁଦିନ ପାଇଁ ବିଦାୟ ନେଇ ଚାଲିଯାଇଛନ୍ତି ବୋଲି ।

ସେଦିନ ଆଜି ବି ମୋ ସ୍ମୃତିରେ ଅପାସୋରା ହୋଇ ରହିଯାଇଛି— ଆଖିରେ ଆଖିଏ ଲୁହଧରି - ଗୁରୁତର କୋହକୁ ସମ୍ଭାଳି ନେଇ ମୁଁ ନିଜେ ଏଇ ହାତରେ ଭାଇନାଙ୍କୁ ସଜେଇ ଦେଇ ସ୍ୱର୍ଗଦ୍ୱାର ପଠେଇଥିଲି । ତାଙ୍କର ମରଶରୀରରେ ଆଉ ଜୀବନ ନଥିଲା-ସତ ସେଇ ଉଜ୍ଜ୍ୱଳ ଚେହେରା ଫ୍ରେମଦିଆ ଚଷମା ତଳର ସ୍ମିତ ହାସ୍ୟରେଖା ଟିକିଏ ବି ମଳିନ ପଡ଼ିନଥିଲା-ବରଂ ଛବିର ମଣିଷ ପରି ଜୀବନ୍ତ ଆଉ ସତେଜ ଦିଶୁଥିଲା । ଭାଇନାଙ୍କର ଏ ଅକାଳ ମରଣ - ମୋର ମନକୁ ଦହଲେଇ ଦେଇଥିଲା । ସେଇଦିନ ମୃତ୍ୟୁ ଜୀବନର ଚିରନ୍ତନ ସତ୍ୟ - ଏହା ମୁଁ ମର୍ମେ ମର୍ମେ ଅନୁଭବ କରିଥିଲି ।

ମୁଁ ତାଙ୍କୁ ଶ୍ରଦ୍ଧାରେ ଡାକେ ଭାଇନା । ସେ କେବଳ ଉତ୍ତର ଦିଅନ୍ତି ‘ଓ’ - ଏ ଉତ୍ତରଟି ମୁଁ ତାଙ୍କଠାରୁ ଘରେ, ବାହାରେ, କର୍ମକ୍ଷେତ୍ରରେ ସବୁଠି ପାଉଥିଲି - ସେଥିରେ ତାଙ୍କର ମୋ ପ୍ରତି ଥିଲା ଅତୁଟ ସ୍ନେହ ଆଉ ଆତ୍ମୀୟତାର ଏକ ଦୃଢ଼ସ୍ୱର – ଆଜି କିନ୍ତୁ ତାଙ୍କ ବିଦାୟର ବର୍ଷଟିଏ କଟିଗଲା - ଆଉ କାହାଠାରୁ ତାଙ୍କପରି ସେଇ ସ୍ନେହ ସଦିଚ୍ଛା ସମ୍ଭାଷଣର ସ୍ୱର ଶୁଣିବାକୁ ପାଉନି । ବାସ୍ତବିକ ସେ କି ପ୍ରକାର ବ୍ୟକ୍ତିତ୍ୱର ଅଧିକାରୀ

ଥିଲେ ତାହା କଥାରେ କହିହେବନି - ଯିଏ ତାଙ୍କ ସମ୍ବନ୍ଧ ମିଶିଛି - ସେଇ କେବଳ ଅନୁଭବ କରିପାରିବ - ପରନ୍ତୁ ଆପଣାର କରିବାର ଗୁଣଟି ତାଙ୍କୁ ବେଶ୍ ଜଣାଥିଲା - ମିଠାକଥା, ସରୁକଥା ଆଉ ଆତ୍ମୀୟତା ପରିପୂର୍ଣ୍ଣ ତାଙ୍କର ସ୍ନେହସିକ୍ତ ଗୃହିଣୀ ଭୁଲିବାର ନୁହେଁ ।

ମୁଁ ଯେତେବେଳେ ପୁରୀ ସଦର ଚକହ୍ରାଳପୁର ପି. ପି. ସେଣ୍ଟରର ଗାଇନିକ ସ୍ପେସାଲିଷ୍ଟ - ସେତେବେଳେ ସେ ଥିଲେ ପ୍ରସୂତି ବିଭାଗର ସିନିଅର ଗାଇନିକ ସ୍ପେସାଲିଷ୍ଟ । ପ୍ରତିଦିନ ସକାଳୁ ମୁଁ ପ୍ରସୂତି ୱାର୍ଡକୁ ପରିବାର କଲ୍ୟାଣ କାର୍ଯ୍ୟ ତଦାରଖ କରିବାକୁ ଯାଏ । ସେଇ ୱାର୍ଡରେ ସବୁଦିନ ସାକ୍ଷାତ ହୁଏ ଆଉ ଅନେକ ଅନ୍ତରଙ୍ଗ ଆଳାପ ଆଲୋଚନା ମଧ୍ୟରେ ପ୍ରସୂତି ରୋଗ ଆଉ ରୋଗୀଙ୍କ ସଂପର୍କରେ ନୂଆ ନୂଆ କଥା ତାଙ୍କଠାରୁ ଶୁଣିଥାଏ - ମୁଁ ତାଙ୍କଠାରୁ ସବୁବେଳେ କିଛି ଶିଖିବାର ଆଶା ରଖିଥାଏ । ତେଣୁ ସେ ଥିଲେ ମୋ ପାଇଁ ପ୍ରେରଣାର ଏକ ଅଫୁରନ୍ତ ଉତ୍ସ । ଆଲୋଚନାର ପ୍ରସଙ୍ଗରେ ମୋତେ ସେ ଅନେକ ପ୍ରଶ୍ନ କରନ୍ତି । ସବୁଗୁଡିକର ସଠିକ ଉତ୍ତର ବେଳେ ବେଳେ ଦେଇପାରେନି - ତେଣୁ ସାମାନ୍ୟ ତ୍ରୁଟି ପାଇଁ ସେ ମୋତେ ପରିହାସ କରି କହନ୍ତି "ଯା ଚକଣ ଗୁଡ଼ ଚାଲି ଯାଆ, ତୁ ମୋଟିତ ହେଲୁଣି - ତୋ ବୁଦ୍ଧି ବି ମୋଟା ହୋଇଗଲାଣି । ଏଣିକି ଟିକିଏ ଖାଇବା କମ କର, ନହେଲେ କେଉଁଦିନ ମରିବୁ heart attackରେ ।" କିନ୍ତୁ ନିୟତିର ନିର୍ଦ୍ଦେଶ ଅଲଗା - ମୁଁ ସେମିତି ମୋଟି ହୋଇ ବଞ୍ଚିଛି - ମାତ୍ର ମୋ ଆଖି ଆଗରେ ସେ ଚାଲିଗଲେ - ମୋ ପାଇଁ ଯାହା ସତ୍ୟ - ତାଙ୍କ ପାଇଁ ମିଥ୍ୟା ହେଲା - କାରଣ ସେ ମୋ ପରି ମୋଟା ନଥିଲେ - ବରଂ ଥିଲେ ଖୁବ୍ କ୍ଷୀଣକାୟ ।

ତାଙ୍କର ସବୁକଥା ଆଜି ବି ଗୋଟି ଗୋଟି ହୋଇ ମନେପଡ଼ୁଛି । ପରିବାର ନିୟନ୍ତ୍ରଣ ଅସ୍ତ୍ରୋପଚାର କ୍ଷେତ୍ରରେ ଯଦି କିଛି ବାଟ ମୁଁ ଆଗେଇ ପାରିଥିଲି - ତାହାଥିଲା କେବଳ ତାଙ୍କ ସୁନିର୍ଦ୍ଦେଶନାର ଫଳ- ଲାପାରସ୍କୋପିକ ବନ୍ଧ୍ୟାକରଣ ଅସ୍ତ୍ରୋପଚାରରେ ସେ ଥିଲେ ମୋର ଶିକ୍ଷାଗୁରୁ ମୁଁ କଟକରେ ଏଥିପାଇଁ ସ୍ୱତନ୍ତ୍ର ତାଲିମ ପାଇଥିଲି ସତ କିନ୍ତୁ ହାତଧରି ସେ

ମୋତେ କାମ ଶିଖାଇଥିଲେ । ସେତେବେଳେ ମୋତେ କାର୍ଯ୍ୟ କରିବାର ଯେଉଁ ପ୍ରେରଣା ତାଙ୍କଠାରୁ ମିଳିଥିଲା - ତାହା ଭୁଲି ହେବନି - ଆଜିବି ସେ ପ୍ରେରଣା ମୋର ପାଥେୟ ହୋଇରହିଛି ।

ଏବେ ବି ମୋର ମନେପଡୁଛି ଲାପାରସ୍କୋପିକ ଅସ୍ତ୍ରୋପଚାରରେ ମୁଁ ଯେଉଁ ସାଫଲ୍ୟ ଲାଭକଲି ସେଥିପାଇଁ ଡାକ୍ତର ମିଶ୍ର ଓ ତାଙ୍କର ସହଧର୍ମିଣୀ ସୁଚକଣ୍ଠିକା ହେମ ଅପା ( ଝୁଂଜ )ଙ୍କୁ ପାର୍ଟିଟିଏ ଦେବାପାଇଁ କହିବାରୁ ଭାଇନା ସାମାନ୍ୟ ବିରକ୍ତ ହୋଇ କହିଥିଲେ, "ଚୂପ୍ ତୋର ବେଶୀ ପଇସା ହୋଇଗଲାଣି ବୋଧେ" - ଉତ୍ତରରେ କହିଥିଲି, "ଭାଇନା" ! ମୋତେ ଏତେ ଶ୍ରେଷ୍ଠ କରିଦେଇଛନ୍ତି, ମୁଁ କଣ ଏତିକି କରିବା ପାଇଁ ଏତେ ଅସମର୍ଥ । ମୋ କଥା ଆଉ ଟାଳି ପାରିଲେନି । ଆମର ଠିକ୍ ହେଲା December ୯ ତାରିଖରେ South Eastern Railway Hotelରେ ପାର୍ଟି ହେବ । ମୁଁ ଡିସେମ୍ବର ୮ ତାରିଖରେ ପଣସପଦା ପରିବାର ନିୟନ୍ତ୍ରଣ ଅସ୍ତ୍ରୋପଚାର କ୍ୟାମ୍ପକୁ ଚାଲିଗଲି - ପରଦିନ ଅର୍ଥାତ୍ ୯ ତାରିଖରେ ସବୁଦିନ ପରି ଓ୍ୱାର୍ଡ଼କୁ ଗଲି - ଭାଇନା ନଥିଲେ । Dr. Sahooଙ୍କଠାରୁ ପଚାରି ବୁଝିଲି ଯେ ଭାଇନା 'ଓମସା'ର ବୈଠକରେ ଯୋଗଦେବା ପାଇଁ କଟକ ଯାଇଛନ୍ତି -ଯିବା ପୂର୍ବରୁ ସକାଳୁ Dr. Sahooଙ୍କୁ ରୋଗୀମାନଙ୍କ ପାଇଁ ସବୁ ପରାମର୍ଶ ଦେଇଛନ୍ତି— କାରଣ ତାଙ୍କର ଫେରିବା ଡେରି ହୋଇପାରେ ।

ଭାଇନା ଫେରିଲେ ସଂଧ୍ୟାର ଅଳ୍ପ ସମୟ ପରେ - କିଏ ଜାଣିଥିଲା- ଭାଇନାଙ୍କର ଫେରନ୍ତା - ସବୁଦିନ ପାଇଁ ଶେଷ ଫେରନ୍ତା ବୋଲି । ଫେରନ୍ତା ବାଟରେ ସେ ହୃଦଯନ୍ତ୍ରଣା ଅନୁଭବ କଲେ - ଆଉ ପୁରୀରେ ପହଞ୍ଚିଲା ବେଳକୁ ସବୁ ଶେଷ - ଭାଇନା ସମସ୍ତଙ୍କୁ ଛାଡ଼ି ଚାଲିଗଲେ ।

ଆମ ଆଖିର ଲୁହ, ବୁକୁତଳର କୋହ, ଆମ ଅପାର ବୁକୁଫଟା! ହେଲେ ତାଙ୍କର ମହାନିଦ୍ରାକୁ ଭଙ୍ଗ କରି ପାରିଲାନି । ଆମେ ସବୁଦିନ ପାଇଁ ହରାଇଲୁ ଆମର ସ୍ନେହାଳୁ, ସୁଦକ୍ଷ, ସୁଚିକିତ୍ସକ ଭାଇନାଙ୍କୁ - ତାଙ୍କର ସ୍ୱପ୍ନଥିଲା ପୁରୀରେ ଗୋଟିଏ ଉନ୍ନତ ଧରଣର ସ୍ତ୍ରୀ ରୋଗ ଚିକିତ୍ସା ଅନୁଷ୍ଠାନ ନିଜ ଉଦ୍ୟମରେ କରିବା ପାଇଁ - ସେ ଦିଗରେ ସେ ବହୁତ ବାଟ ଆଗେଇଥିଲେ ସତ କିନ୍ତୁ ତାଙ୍କ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା ।

ଶେଷରେ ଚକାଡୋଳା ପ୍ରଭୁ ଜଗନ୍ନାଥଙ୍କ ନିକଟରେ ଏତିକି ମିନତି ତାଙ୍କର ଅମର ଆତ୍ମା ଚିର ସଦ୍‌ଗତି ଲାଭକରୁ - ଆଉ ହେମ ଅପାଙ୍କୁ ଭାଇନାଙ୍କ ସ୍ୱପ୍ନର ସଫଳ ରୂପାୟନ ପାଇଁ ଈଶ୍ୱର ଧୈର୍ଯ୍ୟ ଦିଅନ୍ତୁ - ଆଉ ଭାଇନାଙ୍କ ପ୍ରେରଣା ଉପଦେଶ ଆଦର୍ଶ ଆମ୍ଭମାନଙ୍କୁ ସବୁଦିନ ପାଇଁ ଅନୁପ୍ରେରିତ କରୁ ।

—o—

ଅଠାନ୍ତର
ପୁଷ୍ପ

# ଭୁଲି ହୁଏନା

ଅଧ୍ୟାପକ ଡଃ ଗୋପୀନାଥ ମହାପାତ୍ର

ଡିସେମ୍ବର ନଅ ତାରିଖ ୧୯୮୯ । ଏକ ବଜ୍ରପାତ । ହୃଦୟରେ ଦାରୁଣ ଆଘାତ । ଧନୁ ଚାଲିଗଲା । ସବୁଦିନ ପାଇଁ ଚାଲିଗଲା । ୪୭ ବର୍ଷ ମାତ୍ର ହୋଇଥିଲା । ଦୀର୍ଘ ଜୀବନର ପଥ ଆଗକୁ ରହିଥିଲା । ଆଉ ଚାଲିପାରିଲା ନାହିଁ । ଚାଲି ଚାଲି ଥକି ନଥିଲା । ତଥାପି ଶୋଇପଡ଼ିଲା । ଆଉ ଉଠିଲା ନାହିଁ । ନିରଳସ ସେ । କ'ଣ ହେଲା ତା'ର । କାହିଁକି ଶୋଇଗଲା ସେ ? ଏ ପ୍ରଶ୍ନର ଉତ୍ତର କିଏ ଦେବ ? କେହି ଦେବେନି । ବିଧିର ବିଧାନ, କିଏ ବା ରୋଧ କରିବ ? ଭଲ ଲୋକେ ବେଶିଦିନ ରହନ୍ତି ନାହିଁ । ଏହା ଶୁଣାଯାଏ । ଦେଖାଗଲା ଏଇଠି । ଜଣେ ବାଲ୍ୟବନ୍ଧୁ ଭାବରେ ଏହାଥିଲା ମୋ ପକ୍ଷରେ ଏକ ବଜ୍ରପାତ । ହୃଦୟ ବିଦୀର୍ଣ୍ଣ ହେଉଥିଲା । ତା'ର ପତ୍ନୀ ଓ ପିଲାଙ୍କ ହୃଦୟ କ'ଣ ନ ହେଉଥିବ ? କି ସାନ୍ତ୍ୱନା ବା ସେମାନଙ୍କୁ ଦିଆଯାଇପାରିବ । ଅପୂରଣୀୟ ଏ ବିରହର ଜ୍ୱାଳା । କି ଭାଷାରେ ଏ ବାଲ୍ୟବନ୍ଧୁ ସାନ୍ତ୍ୱନା ଦେବ ବନ୍ଧୁପତ୍ନୀଙ୍କୁ ଅଥବା ତା'ର ପୁଅ, ଝିଅ, ପୁତୁରା, ଝିଅଶିଙ୍କୁ । ଯାହା ଭଗବାନ କରିବେ । ସେ ନେଇଛନ୍ତି ; ସେ ହିଁ ସାନ୍ତ୍ୱନା ଦେବେ । ନିର୍ବାକ, ନିସ୍ତବ୍ଧ ହୋଇ ବସି ରହିଲି । କେବଳ ଭଗବାନଙ୍କୁ ହିଁ ପ୍ରାର୍ଥନା କରିଥିଲି ; "ପ୍ରଭୁ – ଏମାନଙ୍କୁ ଏ ଦୁଃଖ ସହିବାକୁ ଶକ୍ତି ଦିଅ । ଶିଭୁ ବାହାଘର ଦିନ ତା ସହିତ ଦେଖା ହୋଇଥିଲା । ଏ ଦେଖା ଯେ ଶେଷ ଦେଖା ହେବ, ସେକଥା ମୋଟେ ଭାବି ନଥିଲି ।

'ଧନୁ' ;—ଏହା ଥିଲା ତା'ର ପିଲାଦିନର ଡାକ ନାମ । ଏଇ ନାମରେ ଆମେ ସମସ୍ତେ ତାକୁ ଡାକୁଥିଲୁ । ସ୍କୁଲରେ ତାର ନାଁ ଥିଲା ବୈଦ୍ୟନାଥ ମିଶ୍ର । ତଥାପି ମୁଁ ତାକୁ କେବେ ବୈଦ୍ୟନାଥ ବୋଲି ଡାକି ନାହିଁ । ସେହି 'ଧନୁ' ହିଁ ଥିଲା ମୋ ପାଇଁ ଏକ ପ୍ରିୟ ନାମ । ସେ ରହୁଥିଲା ପୁରୀରେ । ମୁଁ ରହୁଥିଲି ଗାଁରେ ; ବୀରନରସିଂହ ପୁରରେ ।

ସେ ଗାଁକୁ ଆସିଲେ ମୋର ସଙ୍ଗରେ ହିଁ ସାଙ୍ଗ ହେଉଥିଲା । ମୁଁ ଯେପରି ତାର ଘନିଷ୍ଠ ସାଙ୍ଗ । ଦିନର ବହୁସମୟ ମୋ ସହିତ ସେ କଟାଉଥିଲା । ପୁରୀର ଯାତ୍ରା, ଆଖଡ଼ା, ପାଲ୍ହାକଥାଠାରୁ ଆରମ୍ଭକରି ସ୍କୁଲ ଓ ପାଠପଢ଼ା ଇତ୍ୟାଦି ସବୁକଥା କହୁଥିଲା । କହିଲାବେଳେ କୌଣସି ବନ୍ଧ ବାଡ଼ ନଥିଲା । ସବୁ ଖୋଲା । ପୂରାପୂରି ହୃଦୟ ଖୋଲା । ଗାଁଲୋକେ କହୁଥିଲେ ; —"ହଇରେ ! କ'ଣ ଏତେ କଥାବାର୍ତ୍ତା ହେଉଛ, କଥା ସରୁନାହିଁ ।"

ସେ ପଢୁଥିଲା ପୁରୀଜିଲ୍ଲା ସ୍କୁଲରେ । ଶ୍ରେଣୀରେ ପ୍ରଥମ ହେଉଥିଲା । ଯାହା ଥରେ ପଢୁଥିଲା, ସବୁ ମନେ ରହିଯାଉଥିଲା । ତାର ନନା (ପିତା) ଥିଲେ ଏକାଧାରରେ ସଂସ୍କୃତ, ଓଡ଼ିଆ, ଭୂଗୋଳ, ଅଙ୍କରେ ଜଣେ ପଣ୍ଡିତ ଏବଂ ବିଚକ୍ଷଣ ଶିକ୍ଷକ । ସେ ଯେଉଁ ପିଲାଙ୍କୁ ପଢାଉଥିଲେ ସେ ସୁନା ହୋଇଯାଉଥିଲା । ବର୍ତ୍ତମାନ ସେହି ପଣ୍ଡିତ ହରିହର ମିଶ୍ରଙ୍କ ଛାତ୍ରମାନେ ସମସ୍ତେ ଉଚ୍ଚପଦବୀରେ ଅଧିଷ୍ଠିତ । ଏହିତ ତାଙ୍କର ବଡ଼ବଡ଼ା ଓ ଶିକ୍ଷକତାର ପ୍ରମାଣ । ତାଙ୍କର ଶିକ୍ଷକତାର ସ୍ପର୍ଶ ଲାଗିଥିଲା ମୁନ୍ନରୁ ଏହି ବୈଦ୍ୟନାଥଠାରେ । ମୁନ୍ନଦୁଆ ଝାଣହେଲା । ତାହାପରେ ଦେଖାଗଲା, ବୈଦ୍ୟନାଥ ସବୁବେଳେ ଶ୍ରେଣୀରେ ପ୍ରଥମ । ସେଥିପାଇଁ ଶିକ୍ଷକ ମହଲରେ, ଛାତ୍ରମହଲରେ ତାର ଆଦର ବେଶି । ପରଜୀବନରେ ଏହା ଫଳରେ ତାର ବ୍ୟକ୍ତିତ୍ୱ ବହୁ ଉପରକୁ ଉଠିଥିଲା । ସେ ହେଲା ଛାତ୍ର ସମାଜର ତଥା ଗୃହସ୍ଥ ଜୀବନରେ ଡାକ୍ତର ବର୍ଗଙ୍କର ଅଧିନାୟକ । ସମସ୍ତଙ୍କୁ ନେତୃତ୍ୱଦେଇ ଆସୁଥିଲା ସେ । ଥକ ନଥିଲା । ଭଗବାନ ଡାକିନେଲେ । ସେ ଶୋଇପଡ଼ିଲା । ମନେପଡ଼ୁଛି ସେଦିନ ସଂକ୍ରାନ୍ତି ସୋମବାର ଯାତ୍ରା । ଆମେ ଅଷ୍ଟମ ଶ୍ରେଣୀରେ ପଢୁଥାଉ । ଖରାଦିନ । ପ୍ରଚଣ୍ଡ ଖରାରେ ସମସ୍ତେ କ୍ଳାନ୍ତ ହୋଇଥାନ୍ତି । ମୁଁ ପୁରୀ ଯାଇଥାଏ ଲୋକନାଥ ମହାପ୍ରଭୁଙ୍କର ସେହି ସଂକ୍ରାନ୍ତ ସୋମବାରଯାତ୍ରା ଦେଖିବାପାଇଁ । ଧନୁ ଓ ମୁଁ ; ଦୁହେଁ ଗାଁର ପିଲା । ଦୁହେଁ ଗାଁର ଛାତ୍ର ଓ ବନ୍ଧୁ । ଧନୁ ଡାକିଲା ; —"ଗୋପୀ ! ଆ, ଆମଘର ଦେଖି ଆସିବୁ ।" ଆମେ ଦୁହେଁ ବୁଲି ବୁଲି ଲୋକନାଥ ଘାଟରୁ ପୁରୀରେ ଥିବା ତାଙ୍କ ବସାକୁ ଆସିଲୁ ।

ମୁଁ ବଡ଼ କ୍ଳାନ୍ତ ହୋଇପଡ଼ିଥିଲି । ଖରାବେଳଟା ତାଙ୍କ ଘରେ ଶୋଇ ଶୋଇ କଟାଇଦେଲି । ଘଣ୍ଟାଏ ବାଜିଲା । ହଠାତ୍ କାହାର କରସ୍ପର୍ଶରେ ମୋର ନିଦ ଭାଙ୍ଗିଗଲା । ଦେଖିଲି ଧନୁ ମୋତେ ଡାକୁଛି, —"ଉଠିବୁନି କିରେ ; ଶୋଇଥିବୁ । ଘଣ୍ଟା ବାଜିଲାଣି ।" ମୁଁ ଉଠି ଦେଖିଲି ସେ ଶୋଇନାହିଁ । ଖରାବେଳ ସାରା ବସିଛି ଓ ପଢ଼ୁଛି । ମୁଁ ପଚାରିଲି, "କିରେ, ଖରାବେଳେ ତୁ କ'ଣ ଶୋଇନାହୁଁ । ଆମଘରେ ତ ଖରାବେଳେ ଶୋଇପଡ଼ିବା ପାଇଁ ଘରର ବଡ଼ ବଡ଼ ଲୋକ କହନ୍ତି । ନିଜେ ମଧ୍ୟ ଶୁଅନ୍ତି । ଆମ ଠାକୁରେ ମଧ୍ୟ ଖରାବେଳେ ଶୁଅନ୍ତି । ତୁ କାହିଁ ଶୋଉନାହୁଁ ?" ସେ କହିଲା, "ମୋତେ ଖରାବେଳେ ନିଦ ଆସେନାହିଁ । ତେଣୁ ପଢ଼େ ।" ଏହାଶୁଣି ମୁଁ ବୁଝିଲି—କାହିଁକି ସେ ଶ୍ରେଣୀରେ ପ୍ରଥମ ହୁଏ ।

ହାଇସ୍କୁଲ ସରିଲା । ସେ ଅଧିକ ନମ୍ବର ରଖି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା । ପରୀକ୍ଷା ସମୟରେ ସେ ମୋତେ ଗୋଟିଏ ଭୂଗୋଳ ପ୍ରଶ୍ନୋତ୍ତର ବହି ଦେଇଥିଲା । ସେଥିରେ ଯଥାସ୍ଥାନରେ ରେଖାଚିହ୍ନ Underline ଦେଇଥିଲା । ମୋତେ ବୁଝାଇଥିଲା, ଏହି ରେଖାଙ୍କିତ ପଂକ୍ତିଗୁଡ଼ିକୁ ମନେ ରଖିବାକୁ ହେବ । ମୁଁ ତା' କଥା ମାନିଥିଲି ଓ ସେଥିରେ ଭଲନମ୍ବର ରଖିଥିଲି । ମୋଟାମୋଟି କହିବାର କଥା ହେଉଛି, କିପରି ପଢ଼ିଲେ ମନେରହିବ, ସେକଥା ତାକୁ ବେଶ୍ ଜଣାଥିଲା । ତା'ର ସେ ଉପଦେଶ ଏବେବି ମୋର ମନେପଡ଼ୁଛି । ଏହା କଦାପି ଭୁଲି ହୁଏନା ।

ପରୀକ୍ଷାଫଳ ବାହାର ସାରିଛି । ଗ୍ରୀଷ୍ମାବକାଶ । ଗାଁରେ ଧନୁ ସାଙ୍ଗେ ଆଲୋଚନା, କଥାବାର୍ତ୍ତା । ସମୟ କଟି ଯାଉଛି । ଆମକୁ କ'ଣ କରିବାକୁ ହେବ ? ଆଗକୁ କ'ଣ ପଢ଼ିବା ? ସେ ପୁରୀ କଲେଜକୁ ଦରଖାସ୍ତ କଲା ସାଇନ୍‌ସ ପଢ଼ିବା ପାଇଁ; ମୁଁ କଲି ଆର୍ଟ୍‌ସ ପଢ଼ିବାପାଇଁ । ଦୈବର ବିଚାର ବିଚିତ୍ର । ସେ ରହିଲା ବ୍ରାହ୍ମଣ ସମିତି ହଷ୍ଟେଲରେ । ମୁଁ ମଧ୍ୟ ସେଠାରେ ରହୁଥିଲି । ସେଠାରେ ତାକୁ ଯେପରି ଦେଖୁଥିଲି ତାହା ଏଠାରେ ଟିକିଏ ଲେଖୁଛି ।

ଧନୁ ପୁଅ ହୋଇଯାଇଥିଲା ତାଙ୍କ କକେଇ ବାପା ପୂଜ୍ୟପାଦ ବଳଭଦ୍ର ମିଶ୍ରଙ୍କ ଘରକୁ । ସେ ଧନଶାଳୀ ନଥିଲେ, ଥିଲେ ଏକ ପବିତ୍ରତାର ମୂର୍ତ୍ତିମନ୍ତ ପୁରୁଷ, ନିତ୍ୟ ସ୍ନାନ, ଆହ୍ନିକ କର୍ମ, ପ୍ରଭୁ ଆରାଧନାରେ ସେ ସମୟ ଅତିବାହିତ କରୁଥିଲେ । ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରତ୍ୟହ ଭକ୍ତି ନୈବେଦ୍ୟ ଅର୍ପଣ କରୁଥିଲେ । ଏଥିପାଇଁ ତାଙ୍କୁ ବହୁସମୟ ନୀଳାଚଳରେ ରହିବାକୁ ହେଉଥିଲା । ଫଳରେ ସ୍ୱଳ୍ପ ଜମିରୁ ଫସଲ ଆମଦାନୀରେ ଅନ୍ତରାୟ ରହିଥିଲା । ତାଙ୍କର ଆର୍ଥିକ ସ୍ୱଚ୍ଛଳତା ନଥିଲା । ତଥାପି ସେ ଧନୁକୁ ଯଥାଶକ୍ତି ଅର୍ଥ ଦେଉଥିଲେ । ମାତ୍ର ତାହା ଯଥେଷ୍ଟ ନଥିଲା । ଧନୁର ଭାଇନା ( ବଡ଼ଭାଇ ) ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ମିଶ୍ର ଥିଲେ ପୋଷ୍ଟାଲ ବିଭାଗର ଜଣେ ଅଫିସର । ସେ ନିଜର ଅର୍ଜିତ ଅର୍ଥରୁ କିଛି ତାକୁ ସାହାଯ୍ୟ ଦେଉଥିଲେ । ତା'ଛଡ଼ା ସେ ତ ବୃତ୍ତି ପାଉଥିଲା । ସବୁଆଡ଼ୁ ଏପରି ଅର୍ଥ ଆସି ତା'ର ଖର୍ଚ୍ଚ ଚଳିଯାଉଥିଲା । ମୁଁ ଦେଖିଛି, ସେ କଷ୍ଟକର ଚଳୁ ନ ଥିଲା । ବଡ଼ ସ୍ୱଚ୍ଛନ୍ଦରେ ଆର୍ଥିକ ସ୍ୱଚ୍ଛଳତା ମଧ୍ୟରେ ତାର ଛାତ୍ର ଜୀବନ ଅଗ୍ରଗତି କରୁଥିଲା । ନିଜର ପାଠ୍ୟଛଡ଼ା ସେ ଖବରକାଗଜ, ମ୍ୟାଗାଜିନ ଆଦି ପଢିବାକୁ ଭଲପାଉଥିଲା । ଏଥିପାଇଁ ତାର ସାଧାରଣଜ୍ଞାନ ଅତି ଉଚ୍ଚକୋଟିର ଥିଲା । ସେ ଥିଲା ସେତେବେଳର ଛାତ୍ର ସମାଜରେ ଏକ ଅଦ୍ୱିତୀୟ ବକ୍ତା । ଓଡ଼ିଆ ଓ ଇଂରାଜୀରେ ବକ୍ତୃତା ଦେବାରେ ସେ ବହୁବାର ପୁରସ୍କାର ଲାଭ କରିଥିଲା । ତା'ର ବକ୍ତୃତା ମୁଁ ଅନେକବାର ଶୁଣିଛି । ସେ ନିରବଚ୍ଛିନ୍ନ ଭାବରେ ଇଂରାଜୀରେ ଯେପରି ଅନର୍ଗଳ ବକ୍ତୃତା କଲେଜର ପ୍ରଥମ ଜୀବନରେ କରିପାରୁଥିଲା, ତାହା ସେକାଳର ଅନେକ ଅଧ୍ୟାପକଙ୍କଠାରେ ମଧ୍ୟ ଦେଖିବାକୁ ମିଳୁ ନଥିଲା । ସେ ଯାହାହେଉ, ଏହି ବକ୍ତୃତା ଓ ବନ୍ଧୁ-ବତ୍ସଳତା ତାକୁ ଆଗେଇନେଲା କଲେଜ ରାଜନୀତି ଆଡ଼କୁ । ସେ କଲେଜ ରାଜନୀତିରେ ଭାଗନେଲା । ଛାତ୍ରସମାଜକୁ ଆହ୍ୱାନ କଲା । ଫେଡ଼େରେସନ୍ ତରଫରୁ ଭୋଟ ଲଢିଲା । ସେ ହେଲା କଲେଜ ୟୁନିଅନର ସମ୍ପାଦକ । ପୁରୀ କଲେଜ ଏକ ବିରାଟ କଲେଜ । ସମସ୍ତେ ତାକୁ ଜାଣିଲେ । ସେ କଲେଜର କାମ କଲା । ଛାତ୍ରମାନଙ୍କର ହାନିଲାଭ ବୁଝିଲା । ଫଳରେ ପାଠପଢ଼ିବାରେ ବାଧା ସୃଷ୍ଟି ହେଲା । ସେ ରାତିରେ ଅନେକ ସମୟ ଧରି

ପଢ଼ିଲା ଓ ଶେଷରେ ପ୍ରଥମ ଶ୍ରେଣୀରେ ଭଲନମ୍ବର ରଖି ଉତ୍ତୀର୍ଣ୍ଣ ହେଲା ।

ପୁଣି ହେଲା ଗ୍ରୀଷ୍ମାବକାଶ । ଆମ ଦୁହିଁଙ୍କର ଗାଁରେ ରହଣି, ସତ୍ୟାଲୋଚନା, ଭବିଷ୍ୟତ ଚିନ୍ତା ନିର୍ଦ୍ଧାରଣ । ସେ କହିଲା, ଇଞ୍ଜିନିୟରିଂ ପଢ଼ିବନି, ଡାକ୍ତରୀ ପଢ଼ିବ । ତା'ର ଦେହେଟା ବଡ଼ ଦୁର୍ବଳ । ମୁଁ କହିଲି, "ତୁ ଡାକ୍ତରୀ ପଢ଼ିଲେ ଆଗେ ଔଷଧ ଖାଇ ମୋଟା ହେବାକୁ ଚେଷ୍ଟା କରିବୁ" ସେ ହସିଲା ଓ କହିଲା – "ଆରେ, ମୋଟା ହେଲେ ଜୀବନରେଖା ଶ୍ରେଷ୍ଠ ହୋଇଯିବ । ନାନାରୋଗ ଧରିବ, ଶୀଘ୍ର ମରିଯିବ । ପତଳା ହେଲେ ବେଶିଦିନ ବଞ୍ଚିବ ।" ଏକଥା ଡାକ୍ତର ହେଲାପରେ ମଧ୍ୟ ସେ କହୁଥିଲା । ପରେ ସେ କହୁଥିଲା,—"Longer the belt shorter the span of life" ଶେଷ ପର୍ଯ୍ୟନ୍ତ ସେ ସେହି ପତଳା ହିଁ ଥିଲା । ଏବେ ତା କଥା ଭୁଲ୍ ହୋଇଗଲା । ସେ ଚାଲିଗଲା । ଯିଏ ଛାତ୍ରାବସ୍ଥାରେ କେବେ ଭୁଲ ଉତ୍ତର ଦେଇନଥିଲା, ତାର ଏ ଭୁଲ ହେଲା କପରି ? ବଡ଼ ଆଶ୍ଚର୍ଯ୍ୟ ଲାଗେ ଏହା ଭାବିଲେ । ବୋଧହୁଏ ତା' କଥା ଭୁଲ୍ ନୁହେଁ । ଏହା ଏକ ଦୁର୍ଭାଗ୍ୟ । ବିଧାତାର ବିଧାନ ଉପରେ କେଉଁ ନିୟମ ବା ଲାଗୁହେବ ? ଡାକ୍ତରୀ ପଢ଼ିଲାବେଳେ ହଠାତ୍ ଗୁରୁତର ଆପେଣ୍ଡିସାଇଟସ୍ ରୋଗରେ ସେ ଅକ୍ରାନ୍ତ ହୋଇଥିଲା । ମାତ୍ର ମୃତ୍ୟୁ କବଳରୁ ଉଦ୍ଧାର ପାଇଯାଇଥିଲା । ସେ କହୁଥିଲା, ଡାକ୍ତରୀ ଛାତ୍ର ଥିଲି ବୋଲି ସୁଚିକିତ୍ସା ପାଇଲି, ବଞ୍ଚିଗଲି, ନୋହିଲେ କ'ଣ ହୋଇଥାନ୍ତା କେଜାଣି ? ଯାହାହେଉ, ତାହାହିଁ ଥିଲା ବିଧିର ନିର୍ଦ୍ଦେଶ । ତା'ର ଆଗକୁ ଆଉ କାମ କରିବାର ଥିଲା, ସେ ବଞ୍ଚିଗଲା । ମାତ୍ର, ଏଥର କିଛି ନଥିଲା, ହଠାତ୍ ଆଖିବୁଜି ଶୋଇଗଲା ସବୁଦିନ ପାଇଁ ।

ବିଜ୍ଞାନର ଛାତ୍ର, ତଥାପି ସାହିତ୍ୟ ଅନୁରାଗୀ । ଅନେକ ଉପନ୍ୟାସ, କବିତା ପଢ଼ିବାରେ ସେ ବୁଡ଼ିରହୁଥିଲା । ଅନେକ କବିତା ମନେରଖିଥିଲି, ଲେଖୁଥିଲି ମଧ୍ୟ । ମାୟାଧର ମାନସିଂହଙ୍କର 'ଧୂପ' ଓ ବଭୂଦତ୍ତ ମିଶ୍ରଙ୍କର 'ଉର୍ବଶୀର ଚିଠି, ତା'ର ତରୁଣ ପ୍ରାଣରେ ଜୁଆର ସୃଷ୍ଟି କରିଥିଲି । ସେ ମଧ୍ୟ କିଛି ଲେଖି ଲେଖକ ହେବାର ବାସନା ରଖିଥିଲି । ତା'ର ରଚିତ 'ଆଖି' ନାମକ ନାଟକ ରେଡ଼ିଓରେ ପ୍ରସାରିତ ହୋଇଥିଲି ଓ ସେ ସେଥିପାଇଁ

ପୁରସ୍କାର ମଧ୍ୟ ଲାଭ କରିଥିଲ । ମୋଟାମୋଟି କହିଲେ, ସେ ଥିଲ ଜଣେ ସହୃଦୟ ପାଠକ, କାବ୍ୟରସିକ ଓ ରସାଳଭାବୁକ । ଯେଣୁ ରସିକତା ହେତୁ ସେ ପାହାଙ୍କୁ ଭଲପାଇଥିଲ, ପୁଣି ତାହାଙ୍କୁ ମଧ୍ୟ ପତ୍ନୀ ଭାବରେ ବିବାହ କରିଥିଲ । ନିକଟତର ବନ୍ଧୁ ହେତୁ ମୋତେ କୌଣସି କଥା ଲୁଚାଉନଥିଲ । ଆମେ ଦୁହେଁ ପରସ୍ପରକୁ ଅତ୍ୟନ୍ତ ଭଲପାଉଥିଲୁ । କଥାଥିଲ ମୋ ବିଭାଘରକୁ ସେ ବରଯାତ୍ରୀରେ ଯାଇଥାଆନ୍ତା । ମୁଁ ମଧ୍ୟ ତା' ପାଇଁ ଯାଇଥାଆନ୍ତି, ମାତ୍ର ବିଧାତା ଅନ୍ୟପ୍ରକାର କାର୍ଯ୍ୟକ୍ରମ ରଖିଥିଲ । ଆଶ୍ଚର୍ଯ୍ୟର କଥା ଆମଦୁହିଁଙ୍କ ବିବାହତିଥି ଏକାଦିନ ଥିଲ ଓ ଉଭୟଙ୍କ ସ୍ତ୍ରୀଙ୍କ ନାମ ମଧ୍ୟ ଥିଲ ଏକା । କେହି କାହାପାଇଁ ବରଯାତ୍ରୀ ଯାଇପାରିଲୁ ନାହିଁ କି ଭୋଜି ଖାଇପାରିଲୁ ନାହିଁ । ସେତେବେଳକୁ ତାର ଡାକ୍ତରୀ ପଢ଼ା ସରିଯାଇଥାଏ ଓ ମୁଁ ବଲାଙ୍ଗୀର କଲେଜରେ ପ୍ରଥମ ଅଧ୍ୟାପକ ଜୀବନ ଆରମ୍ଭ କରିଥାଏ । ହଠାତ୍ ସେ ଓ ତା ସ୍ତ୍ରୀ ଉଭୟଙ୍କର ପୋଷ୍ଟିଂ ହେଲ ଭବାନୀପାଟଣା—କଳାହାଣ୍ଡିରେ ସେ ମୋତେ ଚିଠି ଲେଖିଲ । ମୁଁ ବଲାଙ୍ଗୀର ବସଷ୍ଟାଣ୍ଡକୁ ଆସିଲି । ସେଦିନ ମୁଁ ତା' ସ୍ତ୍ରୀକୁ ପ୍ରଥମ କରି ଦେଖିଲି । ବଲାଙ୍ଗୀର ବସ୍ଷ୍ଟାଣ୍ଡରେ କିଛିସମୟ ବସ୍ଟି ଅଟକି ରହିଲା । ଆମେ ତିନିଜଣ ଚା' ଦୋକାନକୁ ଯାଇ ଚା' ଜଳଖିଆ ଖାଇଲୁ । ଜୀବନଯାତ୍ରାର ପ୍ରଥମ ସୋପାନରେ ପାଦ ଦେବାକୁ ଯାଉଥିବା ସେହି ନବବିବାହିତ ଉତ୍ଫୁଲ୍ଲିତ ସ୍ୱାମୀ ସ୍ତ୍ରୀଙ୍କର ଆନନ୍ଦପ୍ଲାବିତ ମୁଖମଣ୍ଡଳ ଆଜି ମଧ୍ୟ ମୁଁ ଭୁଲିପାରିନି ।

ଏହାପରେ ଆମ ଭିତରେ ଆଉ ବିଶେଷ ସାକ୍ଷାତ ହୁଏନି । ସାକ୍ଷାତ ହୁଏ ଦିନକ ପାଇଁ ଶୀତଳଷଷ୍ଠୀକୁ । ତା'ର ବାଣରେ ଭଗ୍ନ ସମ୍ପର୍କ । ଶୀତଳଷଷ୍ଠୀକୁ ନିଶ୍ଚୟ ଗାଁକୁ ଆସେ, ବାଣ ଉଆରିକରେ । ସେହିଦିନ ମୋର ତା' ସହିତ ଦେଖାହୁଏ । ସୁଖଦୁଃଖ, ପ୍ରମୋସନ ଇତ୍ୟାଦି କଥାପଡ଼େ । ସେ ତ ସ୍ତ୍ରୀରୋଗ ବିଶେଷଜ୍ଞ ହୋଇ ସାରିଥିଲା । ଆର୍ଥିକ ସ୍ୱଚ୍ଛଳତା ଆସିସାରିଥିଲା । ଅର୍ଥପାଇଁ ଆଉ ଚିନ୍ତା ନଥିଲା । ସେ ଭାବୁଥିଲା ତାଙ୍କ ପ୍ରଫେସନ ପ୍ରତି ସରକାରଙ୍କ ଦରବାରରେ ନ୍ୟାୟ ମିଳନାହିଁ । ତା'ର

ଯୋଗ୍ୟତାକୁ ଉପଯୁକ୍ତ ସମ୍ମାନ ଦିଆଯାଉନ । ପ୍ରିୟ, ପ୍ରୀତି, ଲାଞ୍ଚ, ମିଛ, ଅନ୍ୟାୟ, ଅନାଚାର, ଦୁର୍ନୀତିକୁ ତା'ଭଳି ସ୍ୱାଧୀନଚେତା, ନିର୍ଭୀକ, ନିରଳସ, ସ୍ୱାଭିମାନୀ ବରଦାସ୍ତ କରନ୍ତା କିପରି ? ସେଥିପାଇଁ ସେ ସଂଗ୍ରାମରତ ଥିଲା । ଓମସାର ସମ୍ପାଦକ ଭାବରେ କାର୍ଯ୍ୟକରି ସରକାରଙ୍କ ନିକଟରେ ନ୍ୟାୟୋଚିତ ଦାବୀ ଉପସ୍ଥାପନ କରୁଥିଲା । ଏତିକିବେଳେ ସେପାଖରୁ ଡାକରା ଆସି ତାକୁ ସବୁଦିନ ପାଇଁ ନେଇଗଲା । ସଂଗ୍ରାମରତ ସୈନିକଭଳି ସେ ଯୁଦ୍ଧଭୂମିରେ ଶେଷ ନିଃଶ୍ୱାସ ତ୍ୟାଗକଲା । କାଉଁରିଆ କାଠି ଭାଙ୍ଗିଗଲା ପଛେ ନଇଁଲା ନାହିଁ । ଦେଶ ଜଣେ କୃତି ସନ୍ତାନକୁ ହରାଇଲା । ସ୍ତ୍ରୀ, ପିଲା, ପରିଜନ ସମସ୍ତଙ୍କୁ ଶୋକ ସାଗରରେ ଭସାଇଦେଇ ଏକ କରୁଣ ମହାଯାତ୍ରାର ଜଣେ ଯାତ୍ରୀ ହେଲା । ଏହିସବୁ ଭାବିଲାବେଳକୁ ହୃଦୟ ଫାଟିଯାଉଛି । ମାତ୍ର ସହିବାଛଡ଼ା ଅନ୍ୟ ଉପାୟ ନାହିଁ । ଏଇତ ଦୁନିଆଁ !

କେହି ରହିନାହିଁ ରହିବ ନାହିଁ ଏ
ଭବରଙ୍ଗଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳ ବଳେ ।

***

ଶାନ୍ତିପୁର ରୋଡ଼
ଭୁବନେଶ୍ୱର

# ଭାବନାର ସୀମା ନାହିଁ !

ଶ୍ରୀ ଉମାକାନ୍ତ ମହାପାତ୍ର

ଗଲା          ଛଅ
ଠିକ୍ ଏହି ସମୟରେ
ଆମ ସମସ୍ତଙ୍କୁ ପର କରି
ହସି ଖେଳି, ହସାଇ ଖେଳାଇ
ପୃଥିବୀରୁ ନେଲ ହେ ବିଦାୟ ।
"ମୁହୂର୍ତ୍ତଂ ଜ୍ୱଳିତଂ ଶ୍ରେୟଂ
ନ ଚ ଧୂମାୟିତଂ ଚିରମ"
ଆଦର୍ଶ ବାଣୀର ସାର୍ଥକତା ପ୍ରତିପାଦନ କଲ ।
ଚିର ବିଦାୟ ନେଇ ଚାଲିଗଲ
ବର୍ଷେ ତଳେ—ସ୍ରଷ୍ଟାଙ୍କ ଇଚ୍ଛାରେ ।
ପିଲାମାନଙ୍କର ପ୍ରିୟ "ଧନୁ" ଭାଇନା
ଆମର ବାପୁଜୀ କେଉଁଠି ରହିଲ ?
କେଉଁ ଯବନିକା ପଛେ - ନିଜ ରଚିତ
ବେତାର ନାଟକର ଅନ୍ତରାଳରେ ?
ସବୁ ଅସ୍ପଷ୍ଟ, ସବୁକିଛି ଅବୁଝା, ଅବ୍ୟକ୍ତ
ସାତତାଳ ଜଳ ମଧ୍ୟେ ଅସୁମାର କାହାଣୀ ପେଡ଼ିର
ଗଦା ଗଦା ଫରୁଆ ପରି
କେତେ କଥା କେତେ ଯୁକ୍ତି ସବୁର ସମାପ୍ତି ।
"ପଳାୟନପନ୍ଥୀ ହେବା ଅନୁଚିତ" ବୋଲି
ମୋତେ କଥା କହୁଥିଲ—ଭୁଲିଲ କେମିତି ?

ହେଲେ ଆମେ କିନ୍ତୁ ଭୁଲିନାହୁଁ
ଭୁଲିନାହୁଁ ସହଜେ ଏମିତି—
ଠକ ଦେଇ ଚଲେ ଯ ତ
ତୁମର ସେ ମହନୀୟ ପ୍ରତିବିମ୍ବ ପ୍ରଗାଢ଼ବୋଧର
ଆଉ ଅକୁଣ୍ଠିତ ପ୍ରେରଣାର ମହୁଫେଣା
ଉଦ୍ଧାମ, ଉତ୍ସାହ ଓ ସାମର୍ଥ୍ୟର ସମନ୍ୱୟ,
ପିଲାଠାରୁ ବଡ଼ଯାଏଁ—କଣ୍ଟୁ କକେଇଙ୍କର
ପୋଖରୀ କୂଳ ଆଲୋଚନାଠାରୁ
ମହନାବ ଗାଁ ମଜଲିସ୍ ଖବର ଯାଏଁ
ଡଃ ମିଶ୍ରଙ୍କ ସାନିଧଠାରୁ,
ଅଗଣିତ ରୋଗଗ୍ରସ୍ତ ଅସହାୟ ଜନତା ଓ
ଆମ ପରି ସାଧାରଣ ଗାଁ ବାଲାଙ୍କ ପର୍ଯ୍ୟନ୍ତ—
କେତେ ନିଷ୍କପଟ ସ୍ନେହ ହାର୍ଦ୍ଦିକତା
ଆଉ ଆନ୍ତରିକ ବନ୍ଧନରୁ !
ସବୁ ରହିଗଲା ପଛେ
ଗାଁ ମୁଣ୍ଡ ଅନାବଶ୍ୟକ ଥୁଣ୍ଟାଗଛ ପରି ।
ପ୍ରାଚ୍ୟ ମତବାଦ ଅନୁସାରେ
ପୁଣି କେବେ ଜନ୍ମ ଜନ୍ମାନ୍ତରେ
କିମ୍ବା ପୁଣି କୋଉ ଜୀବ ବିଜ୍ଞାନୀଙ୍କ
ଅନୁମାନ ଯଦି ସତ୍ୟ ହୁଏ !
କେଉଁଠାରେ ସୌଭାଗ୍ୟକୁ
ପରିଚିତ ପ୍ରାଣ ଯଦି
ମିଶିଯାଏ ଦୈବାତ୍ !

ନିଶ୍ଚୟ ପଚାରିବ,
ମନେ ପକାଇବ,
ସେଇ ଗୋଟିଏ କଥା, ଯାହା ସଦା କହୁଥିଲେ
"ଭାବନାର ସୀମା କାହିଁ ?
ଆଉ ସାନ୍ତ୍ୱନାର ସଞ୍ଜିବନୀ
ନିଶ୍ଚୟ ଭାଳିବ—
ତୁମ ଗନ୍ତପଥର ପରବର୍ତ୍ତୀ ସୂରୀ ଓ ବଂଶଧର
ତୁମ ଅଭିଳାଷର ପେଡ଼ିକୁ ସାଇତି ରଖିଛନ୍ତି
ମହତ୍ତ୍ୱର ଡୋରିକୁ ଟାଣି ଟାଣି ଚାଲିଛନ୍ତି
ତୁମର ସ୍କ୍ରିନ୍ - ପଛପଟେ ଅଦୃଶ୍ୟ ଇଙ୍ଗିତରେ
ଅଦ୍ୟାବଧି ।।



ଶିକ୍ଷକ
ଭାର୍ଗବୀ ହାଇସ୍କୁଲ, ପୁରୀ

# ବାଲ୍ୟବନ୍ଧୁ ବୈଦ୍ୟନାଥ

ଶ୍ରୀ ଶିବ କୁମାର ଦାସ ଚୌଧୁରୀ

ଡକ୍ଟର ବୈଦ୍ୟନାଥ ମୋର ବାଲ୍ୟବନ୍ଧୁ । ଜଣେ ସ୍ୱନାମଧନ୍ୟ ଡାକ୍ତର ଭାବେ ତାଙ୍କର ବହୁ ପ୍ରଶଂସା ଶୁଣିଛୁ । ଗର୍ବ ଅନୁଭବ କରୁଛୁ । କଲେଜ ଜୀବନ ପରେ ପରେ ସେ ଡାକ୍ତରୀ ପଢ଼ିବାକୁ ଚାଲିଗଲେ । ମୁଁ ମଧ୍ୟ ଏଲାହାବାଦ ଚାଲିଗଲି । ପରେ ପରେ ମୋର ଚାକିରୀ କର୍ତ୍ତବ୍ୟର ଜୀବନ, ବୈଦ୍ୟନାଥଙ୍କର ମଧ୍ୟ ଚାକିରୀକଭାବେ ଆମଠାରୁ ଅଲଗା ଜଞ୍ଜାଳ । ବହୁଦିନ ପରସ୍ପର ମଧ୍ୟରେ ସାକ୍ଷାତ ହୋଇପାରି ନଥିଲା । ଘଟଣାଚକ୍ରରେ ମୋର ପୁଅ ବଦଳି ଓ ବୈଦ୍ୟନାଥଙ୍କର ମଧ୍ୟ ପୁଅ ଡାକ୍ତରଖାନାରେ ସ୍ତ୍ରୀ ରୋଗ ବିଶେଷଜ୍ଞ ଭାବେ ଉପସ୍ଥିତ । ଆମ ବନ୍ଧୁତ୍ୱକୁ ଆହୁରି ନିବିଡ଼ କରି ଦେଇଥିଲା । ଆମେ ଦୁହେଁ କେବଳ ପୁଅଙ୍କର ନ ଥିଲୁ । ଆହୁରି ବି ବନ୍ଧୁ ଥିଲେ ମଦନ ଭଞ୍ଜନା, ରାଧା ମିଶ୍ର, ଦେବ ମହାପାତ୍ର, ରମେଶ ଦାଶ, ଜଗ୍ଗୀ ଦାଶ, ବିଜୁ ଓ ଆହୁରି ଅନେକ ବନ୍ଧୁବର୍ଗ । ବୈଦ୍ୟନାଥ କିନ୍ତୁ ଆସୁ ଆସୁ ସମସ୍ତଙ୍କୁ ଖୋଜି କାଢ଼ିଦେଲେ । ମଦନ ଭଞ୍ଜନାକୁ କହି ବୋଲି ପଠାଇ ଆମ ସମସ୍ତଙ୍କୁ ଏକାଠି କରାଇଦେଲେ । ଆମେସବୁ ବନ୍ଧୁ ଏକାଠି ବସିଲୁ । ପରସ୍ପରର ସୁଖ ଦୁଃଖ ବୁଝିଲୁ । ବନ୍ଧୁତାର ସ୍ନେହ ବଢ଼ି ଚାଲିଲା । ଦେବ ମହାପାତ୍ର ଆମମାନଙ୍କ ବୈଠକ ପାଇଁ ଘରଟିଏ ଛାଡ଼ିଦେଲେ । ଏତେ ଦିନ ପରେ ଆମେ ସବୁ ପୁଣି ଏକ ହୋଇଗଲୁ ଛାତ୍ରଜୀବନର ବନ୍ଧୁପରି । ଆମମାନଙ୍କ ପାଇଁ ଏ ମହାଦାନ ଥିଲା ବୈଦ୍ୟନାଥଙ୍କର । ସେ ଆଜି ନାହାନ୍ତି । ଆମେସବୁ ଝୁରୁଛୁ ତାଙ୍କୁ । ଅଦିନରେ ଝରି ପଡ଼ିଲେ ବନ୍ଧୁ ବୈଦ୍ୟନାଥ । ତାଙ୍କର କାମ ଅପୂର୍ଣ୍ଣ ରହିଗଲା । ଜୀବନର ଧାପ ସରି ସରି ଆସୁଛି । ଆମେସବୁ ବି ଦିନେ ନା ଦିନେ ବୈଦ୍ୟନାଥଙ୍କ ସହିତ ନିଶ୍ଚୟ ସାମିଲ ହେବୁ । କିନ୍ତୁ ବୈଦ୍ୟନାଥଙ୍କ ପ୍ରେରଣା ଆମମାନଙ୍କୁ ସେମିତି ଏକାଠି ରଖିଥିବ । ବୈଦ୍ୟନାଥ ଥିବେ ଆମ ପାଖେ ପାଖେ ସବୁବେଳେ । ଆଜି ତାଙ୍କର ଅମର ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ମୋର ଆଶା ସେ ଗ୍ରହଣ କରିବେ ନିଶ୍ଚୟ ।

— o —

ଗାଣ୍ଡବେଡ଼, ପୁରୀ

# ଘର ବାହୁଡ଼ା

**ଅଧ୍ୟାପକ କୃଷ୍ଣ କୁମାର ପଟ୍ଟନାୟକ**

ବୟସ ସେପରି ବେଶୀ ହୋଇ ନ ଥିଲ, କାମ ବି ସରି ନ ଥିଲ, ଡାକ୍ତର ବୈଦ୍ୟନାଥ ମିଶ୍ର ସବୁଦିନ ପାଇଁ ବିଦାୟ ନେଲେ ଗତ ୧୯୮୯ ମସିହା ଡ଼ିସେମ୍ବର ୯ ତାରିଖ ଦିନ । ସେ ଆମମାନଙ୍କ ମେଳରୁ ଚାଲିଗଲେ — ହଠାତ୍ ଆକସ୍ମିକ ଭାବରେ । ବଡ଼ ଅପ୍ରତ୍ୟାଶିତ ତାଙ୍କର ଏଇ ବାହୁଡ଼ା ପର୍ବ । ତାଙ୍କର ପାର୍ଥିବ ଶରୀର ଆମ ନିକଟରେ ନାହିଁ । କେବଳ ରହିଯାଇଛି ତାଙ୍କର ସ୍ମୃତି ।

ଖବରକାଗଜରୁ ବୈଦ୍ୟନାଥ ବାବୁଙ୍କର ମୃତ୍ୟୁ ସମ୍ବାଦ ପଢ଼ିଲା-ବେଳେ ମନେହେଲା ପୃଥିବୀରୁ ସ୍ନେହ, ଶ୍ରଦ୍ଧା ପରିପୂର୍ଣ୍ଣ ଗୋଟେ ଜୀବନଦୀପ ହଠାତ୍ ଲିଭିଗଲା । ତାଙ୍କ ଦେହାନ୍ତ ମୋ ପକ୍ଷେ କେତେ ହୃଦୟ ବିଦାରକ, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ବୈଦ୍ୟନାଥ ବାବୁଙ୍କ ସହିତ ମୋର ସେପରି କୌଣସି ବନ୍ଧୁ ବାନ୍ଧବ ସଂପର୍କ ନଥିଲେ ମଧ୍ୟ ଆତ୍ମିକ ସଂପର୍କ ଗଢ଼ି ଉଠିଥିଲା । ତାଙ୍କ ବିୟୋଗରେ ମତେ ଲାଗୁଛି ସତେ ଯେପରି ମୋ ପରିବାରରୁ କେହି ଜଣେ ଅତ୍ମୀୟ ଆମକୁ ଛାଡ଼ି ଚାଲିଗଲେ । ତାଙ୍କର ସ୍ନେହ, ସହିଚ୍ଛା, ଉଦାରତା ଓ ମହାନୁଭବତା ଏ ଜୀବନ ଥିବାଯାଏଁ ଅଭୁଲା ରହିବ ।

ସ୍ୱର୍ଗତ ଡାକ୍ତର ମିଶ୍ରଙ୍କ ସହ ମୋର ପ୍ରଥମ ପରିଚୟ ସମ୍ବଲପୁରରେ ୧୯୮୨ ମସିହାରେ । ମୁଁ ସେତେବେଳେ ଗଙ୍ଗାଧର ମେହେର ସାନ୍ଧ୍ୟ କଲେଜରେ ଅଧ୍ୟାପକ । ସେ ଥିଲେ ଜିଲ୍ଲା ସଦର ଚିକିତ୍ସାଳୟରେ ସ୍ତ୍ରୀରୋଗ ଓ ପ୍ରସୂତି ବିଭାଗର ବିଶେଷଜ୍ଞ — ଡ଼ାକ୍ତର । ତାଙ୍କ ସହିତ ବହୁବାର ଏକାଠି ହେବାର ସୁଯୋଗ ମତେ ମିଳିଥିଲା । ଦେଶର ଅବସ୍ଥା, ଚିକିତ୍ସା ସମସ୍ୟାଠାରୁ ଆରମ୍ଭକରି ସାହିତ୍ୟ ପର୍ଯ୍ୟନ୍ତ ଅନେକ ଆଲୋଚନା ତାଙ୍କ ସହ ହୋଇଛି । ଆଜି ତାଙ୍କ ସଂପର୍କରେ ଦି'ଧାଡ଼ି ଲେଖି ବସିଲାବେଳେ ସେସବୁ ମନେପଡ଼ିଯାଉଛି । ଡାକ୍ତର ମିଶ୍ରଙ୍କର ଚିକିତ୍ସା

ବକ୍ତା ସହିତ ପ୍ରଭାବଶାଳୀ ଅଥଚ ନିଷ୍ଠାପୂର୍ଣ୍ଣ ବ୍ୟକ୍ତିତ୍ୱ ସମସ୍ତଙ୍କୁ ଆକର୍ଷଣ କରିଥିଲା । ମାନବ ସେବା ହିଁ ମାଧବ ସେବା, ଯାହା ଜୀବନରେ ସୂକ୍ଷ୍ମ ବତାଏ ଓ ପରମ ଆତ୍ମୀୟତା ସୃଷ୍ଟି କରେ—ଏକଥାକୁ ବୈଦ୍ୟନାଥ ବାବୁ ଖୁବ୍ ବିଶ୍ୱାସ କରୁଥିଲେ । ତାଙ୍କ ବିୟୋଗରେ ଏକ କର୍ମମୟ ଜୀବନର ଅବସାନ ଘଟିଲା ।

ଆମ ସମସ୍ତଙ୍କୁ ଦିନେ ନା ଦିନେ ସକଳ ପ୍ରିୟଜନଙ୍କଠାରୁ ବିଦାୟ ନେଇ ଯିବାକୁ ହେବ । ତେଣୁ ଆସିବା ଯିବା ମଣିଷ ପକ୍ଷେ ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଗୁରୁତ୍ୱପୂର୍ଣ୍ଣ ହେଉଛି ପୃଥିବୀରେ ତା'ର ରହଣି-କାଳଟି, ଯେଉଁ କାଳର କାର୍ଯ୍ୟାବଳୀ ଚିରବିଦାୟ ପରେ ବି ତାକୁ ସ୍ମରଣୀୟ କରାଇଥାଏ । ଯଥାର୍ଥରେ କବି କହିଛନ୍ତି—

"କର୍ମେ ଜୀଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ" ।

ଏହି କଥାଟି ଡାକ୍ତର ମିଶ୍ରଙ୍କ ଜୀବନରେ ସତ୍ୟ ହୋଇଅଛି ।

ବୈଦ୍ୟନାଥ ବାବୁଙ୍କର ମୃତ୍ୟୁ ଅକାଳ ମୃତ୍ୟୁ ସତ କିନ୍ତୁ ତାଙ୍କ ଜୀବନ ଅପୂର୍ଣ୍ଣ ନୁହେଁ । ସାନ, ବଡ଼, ଶିକ୍ଷିତ, ଅଶିକ୍ଷିତ, ଜାତି, ଧର୍ମ ନିର୍ବିଶେଷରେ ସେ ଅନେକଙ୍କୁ ସାହାଯ୍ୟ କରିଛନ୍ତି । ବହୁଲୋକଙ୍କର ଉପକାର କରିଛନ୍ତି । ତାହାହିଁ ତାଙ୍କ ଜୀବନକୁ ସଂପୂର୍ଣ୍ଣ କରିଛି । ଆଜିର ବସ୍ତୁବାଦୀ ଦୁନିଆଁରେ ସାଧାରଣ ମଣିଷଟି ପାଇଁ ଚିନ୍ତା କରୁଥିବା ବ୍ୟକ୍ତି କମ୍ ଦେଖାଯାନ୍ତି । ଏପରି ଚିନ୍ତା ଯେଉଁମାନଙ୍କ ପାଖରେ ସେମାନେ କେବେ ମରନ୍ତି ନାହିଁ, ବଞ୍ଚି ରହନ୍ତି ଆମରି ଭିତରେ । ଡାକ୍ତର ମିଶ୍ର ସେମାନଙ୍କ ମଧ୍ୟରୁ ଜଣେ ।

କୁହାଯାଏ ଈଶ୍ୱର ଯାହାକୁ ଭଲପାଆନ୍ତି ତାକୁ ଶୀଘ୍ର ପାଖକୁ ନେଇ ଯାଆନ୍ତି । ଡାକ୍ତର ମିଶ୍ରଙ୍କ କ୍ଷେତ୍ରରେ ତାହାହିଁ ଘଟିଛି ।

***

ରେଭେନ୍ସା କଲେଜ, କଟକ

# ଭକ୍ତ୍ୟାଞ୍ଜଳି

**ଶ୍ରୀ ଅଲେଖ ଚନ୍ଦ୍ର ମହାରଣା**

"ରେ ଆତ୍ମନ୍ ! ନିଦ୍ରା ପରିହରି,
ଫେଡ଼ ତନ୍ଦ୍ରାର ଲୋଚନ        କରି କରି ନିରୀକ୍ଷଣ
ନିଃଶବ୍ଦେ ଜୀବନ ସ୍ରୋତ        ଧାଉଁଛି କପରି
ଭେଟିବାକୁ ମୃତ୍ୟୁସିନ୍ଧୁ କବଳ ଲହରୀ ।"

—ମଧୁସୂଦନ—

ସେହି ମୃତ୍ୟୁ ସିନ୍ଧୁ କବଳ ଲହରୀରେ, କାଳର କୁଟିଳ କଟାକ୍ଷରେ ମିଶିଗଲା ଗୋଟିଏ ଜୀବନ ଗତ ୧୯୮୯, ଡିସେମ୍ବର ୯ ତାରିଖ ସନ୍ଧ୍ୟାରେ, ଯାହା ଏମିତି ହଠାତ୍ ବିନାମେଘେ ବଜ୍ରପାତ ସଦୃଶ ମିଶିଯିବ ବୋଲି କେହି କେବେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ବୃହୁଁ ବୃହୁଁ ବର୍ଷେ ହୋଇଗଲା, ତଥାପି ଏବେ ବି ବିଶ୍ୱାସ ହୁଏନା ସାର୍ ନାହାନ୍ତି ବୋଲି । ଆଖି ଆଗରେ ଜଳ ଜଳ ନାଚ ଉଠୁଛି ତାଙ୍କର ମୁହଁ, ମନେ ପଡ଼ିଯାଉଛି ତାଙ୍କର ପଦ୍ମକଥା ଗୋଟି ଗୋଟି ହୋଇ ।

ମୁଁ ତାଙ୍କର କେମିତି ଏତେ ନିକଟତର ହେଲି ମୁଁ ଜାଣେନା ।

ସାର୍ ମତେ ଆଉ ମୋ ପିଲାମାନଙ୍କୁ କାହିଁକି ଏତେ ଭଲପାଉଥିଲେ ତା ମଧ୍ୟ ଜାଣେନା । ମଣିଷ ପର ମଣିଷଟିଏ ନହେଲେ ପରକୁ ଆପଣାର କରିହୁଏନା । ସେମିତି ଜଣେ ବ୍ୟକ୍ତିତ୍ୱଧାରୀ, ଉଚ୍ଚମନା, ପ୍ରବୀଣ ସ୍ତ୍ରୀରୋଗ ଓ ପ୍ରସୂତି ବିଶେଷଜ୍ଞ ଥିଲେ ଡାକ୍ତର ବୈଦ୍ୟନାଥ ମିଶ୍ର । ସେଇ ମଣିଷ ଚିହ୍ନିଆପାଇଁ ବୋଧେ ସେ ମୋତେ ଏତେ ନିଜର କରି ନେଇଥିଲେ; ଦୀର୍ଘ ୭ ବର୍ଷ ମୋତେ ପାଖରେ ରହିବାର ସୁଯୋଗ ଦେଇଥିଲେ । ତାଙ୍କର ଯେ କୌଣସି କାମ ପଡ଼ିଲେ ମାମୀ, ମିଲି, ପୁପୁନ୍‌କୁ କହୁଥିଲେ ମହାରଣା ସାର୍‌ଙ୍କୁ ଡାକ । ମୁଁ ଥିଲି ତାଙ୍କ ପିଲାଙ୍କର ସାର୍ ଆଉ ସେ ଥିଲେ ମୋର ସାର୍ ।

ମ୍ୟାଡ଼ାମ୍ (ଡାକ୍ତର ହେମଲତା ମିଶ୍ର)ଙ୍କର ପ୍ରମୋସନ ହୋଇ ଡେଙ୍କଲ ବଦଳି ହେବାରୁ ସାର୍ ମଧ୍ୟ ସମ୍ବଲପୁର ଗୁଡ ପୁଣି ବଦଳି ହୋଇଯିବେ ବୋଲି ସ୍ଥିରକରି ଯେତେବେଳେ ସମ୍ବଲପୁର କ୍ୱାର୍ଟର୍ସ ଛାଡିଲେ ସେଦିନ ସକାଳେ ତାଙ୍କୁ ବିଦାୟ ଦେବାକୁ ରୁଣ୍ଡ ହୋଇଥିଲେ ସମ୍ବଲପୁର ଜିଲ୍ଲା ମୁଖ୍ୟ ଚିକିତ୍ସାଳୟର ପ୍ରାୟ ସମସ୍ତ କର୍ମଚାରୀ—ସୁଇପର, ସେବିକାଙ୍କ-ଠାରୁ ଆରମ୍ଭ କରି ଜିଲ୍ଲାର ମୁଖ୍ୟ ଚିକିତ୍ସକଙ୍କ ପର୍ଯ୍ୟନ୍ତ। ବିଦାୟକାଳୀନ ମୁହୂର୍ତ୍ତରେ ସମସ୍ତଙ୍କ ଆଖିରେ ଲୁହ। ସମସ୍ତଙ୍କ ଆଖିର ଲୁହ କହି ଦେଉଥିଲା, ଡାକ୍ତର ବୈଦ୍ୟନାଥ ମିଶ୍ର କେତେ ଭଲ ଡାକ୍ତର ଥିଲେ, କେତେ ଆପଣାର ଥିଲେ, କେତେ ନିଜର ଥିଲେ। ସେ ମାରୁତିରେ ବସିବା ପୂର୍ବରୁ ମତେ କୁଣ୍ଢାଇ ପକାଇ ଛଳ ଛଳ ଆଖିରେ କହିଥିଲେ, "You are just like my younger brother" ସେଇ ପଦକ କଥା ମୁଁ ଭୁଲିପାରୁନି। ସେଇ କଥା ମନେପଡ଼ିଲେ ମୁଁ ଆଜି ଶୋକାଭିଭୂତ ହୁଏ। ଏଇଥିରୁ ମୁଁ ଜାଣିଛି ସେ ମତେ କେତେ ନିଜର କରି ନେଇଥିଲେ, କେତେ ଭଲ ପାଉଥିଲେ। ଡାକ୍ତରଖାନାରେ ସାର୍ଙ୍କ ସହିତ ମୋର ସଂପର୍କ ଜଣେ ପ୍ରସୂତିରୋଗ ବିଶେଷଜ୍ଞ ଓ ଲାବୋରେଟୋରି ଟେକ୍ନିସିଆନର ସଂପର୍କ। କିନ୍ତୁ କର୍ମକ୍ଷେତ୍ର ବାହାରେ ତାଙ୍କ ସହିତ ମୋର ସଂପର୍କ ପାରିବାରିକ ସଂପର୍କ, ପ୍ରିୟ ପରିଜନର ସଂପର୍କ, ମଣିଷ ସହିତ ମଣିଷର ସଂପର୍କ।

ତାଙ୍କ ସହିତ ଯିଏ ମିଶିଛି, ସିଏ ଜାଣିଛି ତାଙ୍କର ସହୃଦୟତା, ତାଙ୍କର ମହାନୁଭବତା, ତାଙ୍କର ମାନବିକତା। ଯିଏ ପ୍ରସୂତି ଯନ୍ତ୍ରଣାରେ ଜର୍ଜରିତ ହୋଇ ତାଙ୍କର ଚିକିତ୍ସା ପାଇ ଯନ୍ତ୍ରଣାମୁକ୍ତ ହୋଇ ମାଆ ହୋଇଛି, ସେ ଜାଣିଛି ତାଙ୍କର ଡାକ୍ତରୀ ବିଦ୍ୟାର ପାରଙ୍ଗମତା ଏବଂ ଯେଉଁ ନାରୀ ବନ୍ଧ୍ୟା ହୋଇଯିବାର ଆଶଙ୍କାରେ ମ୍ରିୟମାଣ ହୋଇ, ନିଜକୁ ଅଭିଶପ୍ତ ମନେକରି, ବାଇ ଓଷା ତେର ବ୍ରତ କରି ଶେଷରେ ତାଙ୍କର ଚିକିତ୍ସାଧୀନ ହୋଇ ମା' ହୋଇ ପାରିବାର ଗୌରବ ଅର୍ଜନ କରିଛି, ସିଏ ଜାଣିଛି ପ୍ରସୂତି ରୋଗ ନିଦାନରେ ତାଙ୍କର ପ୍ରଗାଢତା, ଚମତ୍କାରିତା।

ବିପଦ ବେଳେ ଯିଏ ତାଙ୍କର ସସ୍ନେହ ସାହାଯ୍ୟ ପାଇଛି ସେ ଜାଣିଛି ତାଙ୍କର ମହାନୁଭବତା । ଲେଖିବାକୁ ଭାଷା ପାଉନି । କ'ଣ ବା ଲେଖିବି ? ତାଙ୍କର ଅନ୍ତରଙ୍ଗତାକୁ କଳି ହୁଏନା, ମହାନୁଭବତାକୁ ତଉଲି ହୁଏନା ।

ସମ୍ବଲପୁରରେ ଦୀର୍ଘ ୭ବର୍ଷର ରହଣିରେ ସେ କେତେ ସର୍ବଜନାଦୃତ ହୋଇଥିଲେ ଗୋଟିଏ ଘଟଣାରୁ ତାହା ସ୍ପଷ୍ଟ ଅନୁମାନ କରିହୁଏ । "ଡାକ୍ତର ବୈଦ୍ୟନାଥ ମିଶ୍ରଙ୍କ ପରଲୋକ" ସମ୍ବାଦଟି ଖବର କାଗଜରୁ ସାର୍‌ଙ୍କର ଫଟୋ ସହିତ ଦେଖି ସମ୍ବଲପୁର ସହରର, ସାର୍‌ଙ୍କ ପାଖରେ ଅପରେସନ୍ ହୋଇଥିବା ଜଣେ ଭଦ୍ରମହିଳା ହଠାତ୍ ଚେତା-ଶୂନ୍ୟ ହୋଇ ଯାଇଥିଲେ ଏବଂ ସେହି ଭଦ୍ରମହିଳାଙ୍କର ଆଶୁ ଚିକିତ୍ସା କରିଥିଲେ ବାରମ୍ବେରଡ୍‌ସାଏ ଆୟୁର୍ବିଜ୍ଞାନ ମହାବିଦ୍ୟାଳୟ, ବୁର୍ଲାର ମେଡ଼ିସିନ୍ ଆସିଷ୍ଟାଣ୍ଟ ପ୍ରଫେସର ଡାକ୍ତର ଜୀବନରାମ ଲଠ । ମୁଁ ଏକଥା ଜାଣିଲି ଯେତେବେଳେ ମୁଁ ଡାକ୍ତର ଲଠ୍‌ଙ୍କ ପାଖକୁ ସାର୍‌ଙ୍କର ଶୋକପତ୍ର ଦେବାକୁ ଯାଇଥିଲି । ଗତ ଡିସେମ୍ବର ୧° ତାରିଖ ସକାଳେ ସାର୍‌ଙ୍କର ମୃତ୍ୟୁ ସମ୍ବାଦ ସମ୍ବଲପୁରରେ ପହଞ୍ଚିବା କ୍ଷଣି କେହି ବିଶ୍ୱାସ କରିପାରିଲେନି ଯେ, ଗତ ସନ୍ଧ୍ୟାରେ ଡାକ୍ତର ବୈଦ୍ୟନାଥ ମିଶ୍ର କଟକରୁ ଓମ୍ ସା ମିଟିଂ ସାରି ପୁଣି ଘରକୁ ଫେରିବା ବାଟରେ, ଚାଲୁଥିବା ଜିପ୍ ଭିତରେ, ଭୁବନେଶ୍ୱର ମୁଖ୍ୟ ଚିକିତ୍ସାଳୟର ଅସ୍ଥିଶଲ୍ୟ ବିଶେଷଜ୍ଞ ଡାକ୍ତର ଜଗନ୍ନାଥ ମିଶ୍ରଙ୍କ କୋଳରେ ହଠାତ୍ ହାର୍ଟ ଆଟାକ୍‌ରେ ଢଳି ପଡ଼ିଲେ । ଆଖି ପିଛୁଳାକେ ଜୀବନ ଦୀପ ତାଙ୍କର ନିର୍ବାପିତ ହୋଇଗଲା—ଏପରିକି ଚିକିତ୍ସା ପାଇଁ ଟିକିଏ ସମୟ ମଧ୍ୟ ମିଳିଲାନି । କିନ୍ତୁ ବିଶ୍ୱାସ କରିବାକୁ ହିଁ ହେଲା । ସତ୍ୟ ହିଁ ସବୁବେଳେ ସତ୍ୟ ।

ସାର୍‌ଙ୍କର ବହୁ ଆକାଂକ୍ଷିତ CLINIC NEW LIFE ଜନ୍ମହେବା ଆଗରୁ ତାଙ୍କ Life ଚାଲିଗଲା, ଆଜି ସେ ତାଙ୍କ ସ୍ତ୍ରୀ, ଏକମାତ୍ର ପୁତ୍ର ଓ କନ୍ୟା ଦ୍ୱୟଙ୍କୁ ଦେଇଗଲେ new life—ମାମ୍ମୀ, ମିଲି, ପୁପୁନ୍ ପାଇଁ ପିତୃସ୍ନେହ ବଞ୍ଚିତ ପିତୃହରା life ; ଆଉ ମାଡ଼ାମ୍ ( ଡାକ୍ତର ହେମଲତା ମିଶ୍ର )ଙ୍କ ପାଇଁ ସବୁ ଥାଇ କିଛି ନ ଥିବାର ନିରାଶା ସହିତ ଜଞ୍ଜାଳଗ୍ରସ୍ତ, ଯନ୍ତ୍ରଣା ଦଗ୍ଧ,ହତୋତ୍ସାହ ସମ୍ବଳିତ ଅଶ୍ରୁସିକ୍ତ,ଏକାକୀତ୍ୱପୂର୍ଣ୍ଣ Life.

ଚକାଡୋକା ଗୃହିଁଲେ ସାର୍‌ଙ୍କର CLINIC NEW LIFE ନବ ପ୍ରେରଣା, ନବ ଉନ୍ମାଦନା ନେଇ new life ପାଇବ । ଜଣେ ପ୍ରବୀଣ ସ୍ତ୍ରୀ ଓ ପ୍ରସୂତି ରୋଗ ବିଶେଷଜ୍ଞ ଭାବରେ ଓଡ଼ିଶାରେ ସାର୍‌ଙ୍କର ଖୁବ୍ ଖ୍ୟାତି ଖୁବ୍ ପ୍ରତିଷ୍ଠା ଥିଲା । ତାଙ୍କ ପାଖରେ ଯେଉଁ ଡାକ୍ତରମାନେ କାମ କରିବାର ସୁଯୋଗ ପାଇଛନ୍ତି ସେମାନେ ଜାଣିଛନ୍ତି ପ୍ରସୂତି ବିଦ୍ୟାରେ ସାର୍‌ଙ୍କର କେତେ ଦକ୍ଷତା ! ଛାତ୍ରଜୀବନରେ ସେ ସବୁବେଳେ ପ୍ରଥମ ଶ୍ରେଣୀର ଛାତ୍ରଥିଲେ । ସାମନ୍ତ ଚନ୍ଦ୍ରଶେଖର କଲେଜ, ପୁରୀରେ ପଢ଼ୁଥିଲା ବେଳେ ଛାତ୍ର ୟୁନିଅନର ସହକାରୀ ସମ୍ପାଦକ ( Asst. Secy. ) ଏବଂ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜରେ ଛାତ୍ର ୟୁନିଅନର ସାଧାରଣ ସମ୍ପାଦକ ଥିଲେ ବୋଲି ଶୁଣିଥିଲି । "ଓମ୍‌ସା"ର ଜଣେ ଅଣୁଆ ଓ ନିଷ୍ଠାପର କର୍ମକର୍ତ୍ତା ଭାବରେ "ଓମ୍‌ସା"ର ସ୍ଥିତିକୁ ଆଣ କରିଥିଲେ । ସେ ୧୯୮୨ରେ ଓମସାର ସାଧାରଣ ସମ୍ପାଦକ, ୧୯୮୪ରେ ଉପ-ସଭାପତି ଥିଲେ । ୧୯୮୮ରେ ଓଡ଼ିଶାରେ "ଡାକ୍ତରମାନଙ୍କ କାର୍ଯ୍ୟବନ୍ଦ ଆନ୍ଦୋଳନ" ପରିପ୍ରେକ୍ଷୀରେ ସରକାର ତାଙ୍କୁ ଆକ୍ଷୋଭମୂଳକ ଭାବରେ ବଦଳି ଆଦେଶ ଦେଇଥିଲେ । କିନ୍ତୁ ସେ ତାଙ୍କ ଜିଦ୍‌ରେ ଅଟଳ ରହିଲେ । ତାଙ୍କର ଦୃଢ଼ ମନୋବଳ ପାଇଁ, ବଳିଷ୍ଠ ମତ ଓ ଆଦର୍ଶବାଦ ପାଇଁ ଇସ୍ତଫାପତ୍ର ନେଲେ ଆଉ ସରକାର ତାଙ୍କ ଉଦ୍ଦେଶ୍ୟମୂଳକ ଆଦେଶ ପ୍ରତ୍ୟାହାର କରିବାକୁ ବାଧ୍ୟହେଲେ । ଏହାହିଁ ତାଙ୍କର ଆଦର୍ଶବାଦ ଦୃଢ଼ତାର ପ୍ରମାଣ ।

ଚିକିତ୍ସା ଜଗତ ବାହାରେ ସାଂସ୍କୃତିକ କାର୍ଯ୍ୟକ୍ରମରେ ତାଙ୍କର ମଧ୍ୟ ପ୍ରଗାଢ଼ ଦକ୍ଷତା ଥିଲା । ଛାତ୍ର ସମୟରେ ଲେଖିଥିବା ନାଟକ "ଆଖି" ଆକାଶବାଣୀ ଦିଲ୍ଲୀରୁ ପ୍ରସାରିତ ହୋଇଥିଲା ଏବଂ ତାହା ଶ୍ରେଷ୍ଠ ନାଟକ ରୂପେ ବିବେଚିତ ହୋଇଥିଲା । ସେ ଜଣେ ବିଶିଷ୍ଟ ବକ୍ତା ଥିଲେ । ସେମିନାର ଓ କନ୍‌ଫରେନ୍‌ସରେ ତାଙ୍କର ସନ୍ଦର୍ଭ ଶ୍ରେଷ୍ଠସ୍ଥାନ ଅଧିକାର କରୁଥିଲା । ପରିବାର କଲ୍ୟାଣ କାର୍ଯ୍ୟକ୍ରମର ଉନ୍ନତି ବିଧାନପାଇଁ ସେ ତାଙ୍କର ମୂଲ୍ୟବାନ ଟୀକା ଟିପ୍ପଣୀ ଦେଇ ପ୍ରଶଂସାଭାଜନ ହୋଇଥିଲେ ।

ଡଃ ବୈଦ୍ୟନାଥ ମିଶ୍ର ସ୍ମୃତି ତର୍ପଣ – ୫୪

ନିର୍ଭିକତା ଥିଲା ସାରଙ୍କର ବିଶେଷତ୍ୱ । ସେ ଯାହା କରିବାକୁ ଚାହୁଁଥିଲେ ତାହାହିଁ କରୁଥିଲେ । ଅନ୍ୟାୟ ଯିଏ କରେନା ସିଏ କାହିଁକି ଡରିବ ? କାହାକୁ ବା ଡରିବ ! ସିଏ ଯାହା କୁହନ୍ତି ମୁହେଁ ମୁହେଁ କୁହନ୍ତି – ପଛରେ ନୁହେଁ । ସାର୍‌ଙ୍କ ମତ – ଭୁଲ୍ କରିଛ, ସ୍ୱୀକାର କର । ନିଜେ ଯାହା ନୁହଁ ତାହା ବୋଲି ଦେଖାଇ ହୋଇ ପଦ ପଦବୀର ଅମର୍ଯ୍ୟାଦା କରନା । କର୍ତ୍ତବ୍ୟର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିବାକୁ ସେ ସବୁବେଳେ କହୁଥିଲେ । କର୍ତ୍ତବ୍ୟ ସମ୍ପାଦନରେ ଶୃଙ୍ଖଳା ରଖିବା ଥିଲା ତାଙ୍କର ମତ । ବିଶୃଙ୍ଖଳା ବାତାବରଣକୁ ସେ ପ୍ରଶ୍ରୟ ଦେଉ ନଥିଲେ । ଡାକ୍ତର ହିସାବରେ ତାଙ୍କ ନିକଟରେ ଧନୀ, ଗରିବ, ନେତା, ଅଭିନେତା ବଡ଼ ସାନର ବାଛ ବିଚାର ନ ଥିଲା । ସେ କୁହନ୍ତି "patient is patient who ever he or she is.

ସାର୍‌ଙ୍କର ସ୍ନେହ, ସୋହାଗ ପାଇଁ ମୁଁ ତାଙ୍କ ନିକଟରେ ଚିରଋଣୀ ହୋଇ ରହିଯାଇଛି । ଆଜି ତାଙ୍କର ପ୍ରଥମ ବାର୍ଷିକ ଶ୍ରାଦ୍ଧ ଦିବସରେ ସେହି ମହାନ୍ ବ୍ୟକ୍ତିତ୍ୱ ନିକଟରେ ନତମସ୍ତକ ହୋଇ ମୋ ଅନ୍ତରର ଭକ୍ତ୍ୟାଞ୍ଜଳି ଅର୍ପଣ କରି ଚକାଡୋଳାଂକ ନିକଟରେ ଏତିକି ମାଗୁଣି କରୁଛି ଅମର ଆତ୍ମା ତାଂକର ଚିରଶାନ୍ତି ଲଭ କରୁ – ତାଂଙ୍କ ଆଶୀଷରୁ ତାଂକ ପଦାଂକ ଅନୁସରଣ କରି ମାମୀ, ମିକି, ପୁପୁନ୍, ବୁନିଆ ଦାଣ୍ଡରେ ଦୃଢ଼ ପଦ ପାତ କରି ପାଞ୍ଚ ଜଣରେ ଜଣେ ହୁଅନ୍ତୁ ଏବଂ ମାଡ଼ାମ୍, ସାର୍‌ଂକର ଅପୂରଣୀୟ ଇଚ୍ଛାକୁ ପୂରଣ କରିବା ପାଇଁ ସମର୍ଥା ହୁଅନ୍ତୁ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ !!!



ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ
ସମ୍ବଲପୁର

# ବଉଦା ପାଖକୁ-ଅନ୍ତିମ ଚିଠି

ଶ୍ରୀ ରମାବଲ୍ଲଭ ମିଶ୍ର

ଦୀର୍ଘ ଏକବର୍ଷର ବ୍ୟବଧାନ ପରେ
ଲେଖୁଛି ତୁମକୁ ଚିଠି ଆଜ୍ଞେ ବୈଦ୍ୟନାଥ
ସ୍ନେହ ନେବ ଯହିଁ ଥାଅ ସରଗ ପୁରରେ
ଅଶାନ୍ତ ମନର କୋହ କରିବାକୁ ଶାନ୍ତ ।୧।

ସ୍କୁଲରେ ଆଜ ଉଣିଶିଶ ପଞ୍ଚାବନ ପୁଣି
ପଢାଉଥିଲ ମୁଁ ପାଠ ନିଜ ପାଖେ ରଖି
ଭୋଳାନାଥ ବିଦ୍ୟାଳୟେ ଥିଲ ଶ୍ରେଷ୍ଠ ମଣି
ମାଇନର ବୃତ୍ତି ପାଇ ଖୋଲିଦେଲ ଆଖି ।୨।

ଜିଜ୍ଞାସୁ ମାନସେ ତବ କେତେ ନୂଆ କଥା
ଉଙ୍କି ମାରୁଥିଲ ଯେବେ, ଯୁକ୍ତିତର୍କ ଛଳେ
ସମାଧାନେ ତତପର ହେଉଥିଲ ଯଥା
ଭୁଲି ପାରିବିନି କେବେ ଭୁଲି ନୁହେଁ ତିଳେ ।୩।

ପିତା ହରିହର ଯେଣୁ ଥିଲେଟି ପଣ୍ଡିତ
କରିଥିଲେ ସୁଚରିତ୍ର ଦେଇ ନିଜ ଜ୍ଞାନ;
ଉପଯୁକ୍ତ ପିତାଙ୍କର ଯୋଗ୍ୟ ବରପୁତ୍ର
ଜନ୍ମିଥିଲ କରିବାକୁ ପିତୃକୁଳ ଧନ୍ୟ ।୪।

ବାଲ୍ୟକାଳୁ ବହୁ ଦୁଃଖ ଭୋଗି ବାରମ୍ବାର
ଗୁଣବନେ ସଂସାରରେ ଲଭି ଯଶକୀର୍ତ୍ତି
ସଂସାରର ଅଳୀକତା କରିଥିଲ ସାର
ଛାଡିଗଲ ଅଠେଇଶ ବର୍ଷ ହୋଇ ପୂର୍ତ୍ତି ।୫।

ଗର୍ବ କରୁଥିଲି ଯେବେ ହୋଇଲ ଡାକ୍ତର
ଯାଉଥିଲି ଭେଟିବାକୁ ଡାକ୍ତରଖାନାରେ
ନ ଥିଲା ତ ଗର୍ବ ମନେ ଉଚ୍ଚ ପଦବୀରେ
ସନ୍ଧ୍ୟାକେ ଫେରିଥିଲି ଭେଟି କ୍ୱାର୍ଟରରେ ।୬।

ଜନସେବା ଥିଲା ତୁମ ଜୀବନର ବ୍ରତ
ଜୀବନରେ କର୍ତ୍ତବ୍ୟରେ କରିନାହଁ ହେଳା
ପ୍ରସୂତି ବିଭାଗ ଠାରେ ହରାଇ ସନ୍ତତ
ହାସ୍ୟ ବିଧାତାର ଏହା କି ବିଚିତ୍ର ଲୀଳା । ।୭।

ମଣିଷ କରିବା ପାଇଁ ତିନୋଟି ପିଲାଙ୍କୁ
ଅକ୍ଲାନ୍ତ ପରିଶ୍ରମରେ କରିଲ କ୍ଲିନିକ୍ ;
ଇଚ୍ଛା ଥିଲା ନର୍ସିଂହୋମ କରିବାକୁ ତାକୁ,
ରହିଗଲା ମନକଥା ମନେ, ହେଲ ମୂକ ।୮।

ଡାକିବାକୁ ଗଲ ଯେବେ ହେବାକୁ ସାକ୍ଷ
ପୁଣି ନିବେଦିବ ମୋରେ ଶିକ୍ଷାପ୍ରାପ୍ତି ଆଶେ
ହାସ୍ୟମୁଖେ ନିଃସଙ୍କୋଚେ କହିଥିଲ ମଧ୍ୟ
"ମୁଁ ପଢିଛି ମୋର ପୁଅ ପଢିବ କା ପାଶେ ?

କଥା ପଦକରେ ଥିଲା କି ଅମୃତ ଅବା
ନାହିଁକରି ପାରିଲିନି ବିବେକକୁ ପୁଣି
ପରିବାରେ ଏକ ହୋଇ ରହି ଆଜସୁଦ୍ଧା
ପଢାଇ ଆସୁଛି ତାକୁ ତୁମ ମନ ଜାଣି ।୧୦।

ଯେଉଁଦିନ ଚାଲିଗଲ ଅଳୀକ ସଂସାରୁ
ନ ଥିଲି ମୁଁ ତୁମ ଗୃହେ ଯେଣୁ ଉପସ୍ଥିତ
ପ୍ରଭାତ ଲାଗିଲା ବିଷ ଦଉଡିଲି ଦୂରୁ
(ମାତ୍ର) ଦେଖିବାକୁ ମିଳିଲାନି ତୁମ ହସମୁଖ ।୧୧।

ଡାକେ ମାମୀ, ମିଳି, ପୁଣି ଡାକଇ ପ୍ରସୂନ
ଡାକନ୍ତି ସଭିଏଁ ତୁମ ପରିବାରବର୍ଗ
ଥରେ ହେଲେ ତାଙ୍କ ଡାକ କାହିଁକି ଶୁଣୁନ ?
କରୁଛନ୍ତି ତୁମକୁ ସେ ନେଇ କେତେ ଗର୍ବ ।୧୨।

ଶେଷରେ ଲେଖକ ବୁକେ ଉଠି କରେ କ୍ଷୋଭ
ବଇଦା ଡାକ କି ଆଉ ଡାକବାକୁ ହାସ୍ୟ ?
ଶେଷଥର ପାଇଁ ଦେଇ ସ୍ନେହର ଆଶୀଷ
ଅଜାଣରେ ଭୁଲିବନି ନେଉଛୁ ବିଦାୟ ।୧୩।

ତୁମର ଶୁଭାକାଂକ୍ଷୀ
ରମାବଲ୍ଲଭ ମିଶ୍ର
ଶିକ୍ଷକ
ପୁରୀ

# ଅମର ଜ୍ୟୋତି

ଶ୍ରୀମତୀ ପ୍ରମିଳା ଆଚାର୍ଯ୍ୟ

"ମୁଝ୍‌କୋ ମେରେ ବାଦ୍ ଦୁନିଆ ଢୁଣ୍ଡେଁଗୀ"

ଏହି ଉକ୍ତିଟି କିଏ କହିଥିଲେ ମୋର ମନେ ନାହିଁ । କିନ୍ତୁ ଡାକ୍ତର ବୈଦ୍ୟନାଥ ମିଶ୍ରଙ୍କ ଜୀବନ କ୍ଷେତ୍ରରେ ଏହାହିଁ ସତ୍ୟ । ପୁରୀ ସହରରେ ଡାକ୍ତର ହିସାବରେ ସାତବର୍ଷ ରହଣୀ ଭିତରେ ଏତେ ଲୋକପ୍ରିୟ ଡାକ୍ତର କେହି ନ ଥିଲେ । ଯଦ୍ୟପି ସେ ସ୍ତ୍ରୀରୋଗ ବିଶେଷଜ୍ଞ ହେଲେ ବି ଅନେକ୍ କିସମର ରୋଗପାଇଁ ରୋଗୀମାନେ ତାଙ୍କ ଦ୍ୱାରସ୍ଥ ହେଉଥିଲେ । ପଇସାବାଲା ରୋଗୀ ଯଦି ଆସେ ତେବେ ପାରିଶ୍ରମିକ ନେବାରେ ଦ୍ୱିଧା ନାହିଁ, ଯଦି ଆର୍ଥିକ ଅଭାବ ରହିତ ରୋଗୀ ହୋଇଥାଏ ତେବେ ହାତରୁ ଔଷଧ ଦେଇ ଚିକିତ୍ସା କରିବାରେ କୁଣ୍ଠାଭାବ ନାହିଁ । ଧନୀକ ସମାଜର ରୋଗୀମାନଙ୍କ ପାଇଁ ସ୍ପେଶାଲ ଟ୍ରିଟମେଣ୍ଟ୍ ନାହିଁ କି ଗରିବ ରୋଗୀମାନଙ୍କ ପାଇଁ ଅବହେଳା ନାହିଁ । ଏହାହିଁ ଥିଲା ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ, ଯେଉଁଥିପାଇଁ ଆଜି ପ୍ରତ୍ୟେକ ଶ୍ରେଣୀର ଲୋକ ତାଙ୍କୁ ଝୁରୁଛନ୍ତି । କାହାର ଅସୁବିଧା ସମୟରେ ଶୋଷଣ କରିବା ମଧ୍ୟ ତାଙ୍କ ନୀତି ବିରୁଦ୍ଧ ଥିଲା । ଆଉ ସବୁଠୁ ବଡ଼ କଥା ହେଲା, ସେ ଯାହା ଥରେ ଠିକ୍ ବୋଲି ଭାବୁଥିଲେ ସେଥିରୁ ତାଙ୍କୁ ଓହରେଇବାର ଶକ୍ତି କାହାର ନ ଥିଲା ।

୧୯୮୯ ମସିହାରେ ଡାକ୍ତରମାନଙ୍କ ଆନ୍ଦୋଳନ ବେଳର କଥା ମନେପଡ଼ି ଯାଉଛି । ସେଇ ସମୟରେ ଦିନେ ସଂଧ୍ୟାବେଳେ ଆମଘରେ ଆସି ପହଞ୍ଚିଲେ । ଏମିତିରେ ସେ ତ' ବହୁତ କମ୍ ଆସନ୍ତି, କାରଣ ତାଙ୍କୁ ସମୟ କେବେ ହୁଏନାହିଁ । ତେଣୁ ଆମେ ସ୍ୱାମୀ ସ୍ତ୍ରୀ ପରମ ଆନନ୍ଦରେ ତାଙ୍କ କଥା ଶୁଣୁଥିଲୁ । ଆନ୍ଦୋଳନର ଅନେକ ଦିଗ ଆଲୋଚନା ହେଲା । ପରେ ମତେ ଅନାଇ କହିଲେ, "ଆଚ୍ଛା କହିଲେ, ମୁଁ ଯଦି ମୋ ମାଟିରୁ ଓହରି ଯିବ ତାହାଲେ ଆପଣ କ'ଣ ବନ୍ଧୁ ହିସାବରେ ଖୁସୀ ହେବେ ?

ମୋ ପୁଅ କାଲି ସକାଳେ ଯଦି ଗୋଟେ ଡାକ୍ତର ହୁଏ ତେବେ ସେ ତ' ଦିନେ ନା ଦିନେ ଭାବିବ ଯେ' ତା' ନନା "ଚରଣଚାଟିଆ" ଥିଲେ ବୋଲି ! ମୋର ନଚେଛ ଚ୍ଛକଷ ଯାଉ, କିନ୍ତୁ 'ଓମସା' ସାଙ୍ଗେ କପଟ ଆଚରଣ କରି ପାରିବନି । ସହକର୍ମୀ କେତେଜଣ ଶାସନରେ ଥିବା ଲୋକ ତାଙ୍କ ନିଜଲୋକ ବୋଲି ଦେଖେଇବାକୁ ଯାଇ କପଟ 'ଓମସା' ବିରୁଦ୍ଧରେ ଷଡ଼ଯନ୍ତ୍ର କରିଛନ୍ତି, ସେ ବିଷୟରେ ଗପିଲବେଳେ ତାଙ୍କ କଣ୍ଠସ୍ୱର ଦୁଃଖରେ ଘରଘରାନ୍ତ ହୋଇ ଯାଉଥିଲା । ସରକାର ତାଙ୍କ ବିରୁଦ୍ଧରେ କ'ଣ ପଦକ୍ଷେପ ନେବେ ସେ ବିଷୟକୁ ସେ ଖାତିର କରୁ ନ' ଥିଲେ, ମନଦୁଃଖ କରୁଥିଲେ ତାଙ୍କ ବନ୍ଧୁମାନଙ୍କ ମତିହୀନ କାର୍ଯ୍ୟଲାଗି ।

ତାଙ୍କର ସହୃଦୟତା ଯିଏ ଅନୁଭବ କରିଛି, ସେ କହିବ ଯେ' ସେ ପରଶମଣି ଥିଲେ । ସମସ୍ତ ବନ୍ଧୁମାନେ ଯିଏ ଯେତେବେଳେ ଅସୁବିଧାରେ ଅଛି ବୋଲି ସେ ଜାଣିଲେ ସାଙ୍ଗେ ସାଙ୍ଗେ ତା' ପାଖରେ ଯାଇ ଠିଆହୋଇ ଯାଉଥିଲେ । ନିମାଇଁ ବାବୁଙ୍କ ସ୍ତ୍ରୀଙ୍କ ପାଇଁ ଯେତିକ ବ୍ୟସ୍ତ, ଜଗନ୍ନାଥ ବାବୁଙ୍କ ବଦଳି ବେଳେ ସେତିକ ମନଖରାପ । ବାଉରିବନ୍ଧୁ ବାବୁଙ୍କ ପାଇଁ ମଧ୍ୟ ସେତିକ ଉଦବେଗ । ଏତିକ ପାତଳା ମଣିଷଟିଏ, କିନ୍ତୁ ଭଗବାନ କି ଐଶ୍ୱରିକ ଶକ୍ତି ତାଙ୍କୁ ଦେଇଥିଲେ, ବିଦ୍ୟାରେ ବୁଦ୍ଧିରେ, ବୁଝାମଣାରେ, ସବୁବେଳେ ଅଗ୍ରଣୀ । ଖାଲି ଡାକ୍ତରୀ ବିଦ୍ୟାରେ ନୁହେଁ, ପ୍ରତ୍ୟେକ ବିଷୟରେ ତାଙ୍କର ଗଭୀର ଜ୍ଞାନ । କି ରାଜନୀତି, କି ସାମାଜିକ ନୀତି, କି ବ୍ୟବସାୟ ନୀତି ; ଯେକୌଣସି ବିଷୟରେ ଥରେ ଯଦି ତାଙ୍କ ସାଙ୍ଗେ ଆଲୋଚନା ଆରମ୍ଭ ହେଲା ତେବେ ତାଙ୍କ ପାଣ୍ଡିତ୍ୟ ଆଗରେ ସତରେ ମଥା ନଇଁଯାଏ । ବହୁତ କମ୍ ଥର ତାଙ୍କ ସାଙ୍ଗେ ଆଲୋଚନାର ସୁଯୋଗ ମିଳିଛି । ପ୍ରକୃତରେ ଶ୍ରଦ୍ଧା ଆସି ଯାଉଥିବା ମଣିଷ ପରି ମଣିଷଟିଏ । କେତେ ଭାଗ୍ୟବାନ ହୋଇଥିଲେ ସେଭଳି ବନ୍ଧୁ ଜଣେ ମିଳିଥାଏ ।

୧୯୭୬ ମସିହାରେ ମୋର ତୃତୀୟ ସନ୍ତାନ ଜନ୍ମ ବେଳକୁ ମୋର ମୃତ୍ୟୁ ଆଉ ଜୀବନ ଭିତରେ ଟଣା ଓଟରା ହେଲାବେଳେ ସମସ୍ତ ଡାକ୍ତର ମୋ ଜୀବନର ଆଶା ଛାଡି ଦେଇଥିଲେ । ସେତେବେଳେ ରାତି ରାତି ଅନିଦ୍ରା

ରହି, ମେଡିକାଲ ଜର୍ଣ୍ଣାଲ ଖୋଲେଇ ଖୋଲେଇ ବୈଦ୍ୟନାଥ ବାବୁଙ୍କ ମତେ ପୁନର୍ଜନ୍ମ ଦେଇଥିଲେ । ସେମିତି ୧୯୮୨ ଡିସେମ୍ବର ମାସରେ ସେ ସମ୍ବଲପୁରରେ ଥାଆନ୍ତି । ପୁଣି ଏକା ଆସିଥାନ୍ତି କ'ଣ କାମରେ, ଆମ ଘରେ ସଂଧ୍ୟାବେଳେ ପହଞ୍ଚିଲେ ! ମୁଁ ଦାଣ୍ଡ ଦୁଆରେ ମନଦୁଃଖରେ ବସିଥାଏ । ମୋର ବଡ଼ଝିଅ ବେମାର ପଡିଥାଏ ପୁଣି ଡାକ୍ତରଖାନାରେ । ସେମିତି ମୋଠୁ ଶୁଣି ଦେଇଛନ୍ତି ଆଉ ଘର ଭିତରକୁ ନ' ଆସି ସିଧାଯାଇ ଡାକ୍ତରଖାନାରେ ମୋ ସ୍ୱାମୀଙ୍କ ପାଖରେ ପହଞ୍ଚି ଝିଅକୁ ଚିକିତ୍ସା କରୁଥିବା ଡାକ୍ତରଙ୍କ ସାଙ୍ଗେ ପରାମର୍ଶ କରି ଏପରି କି ଔଷଧ ନିଜେ ପ୍ରେସ୍କ୍ରାଇବ୍ କ୍ରି କଲେ, ମାତ୍ର ୩ ଘଣ୍ଟା ଭିତରେ ମୋର ଝିଅ ସୁସ୍ଥ ହୋଇ ଉଠିଥିଲା । ଏମିତି ଅନେକ ଘଟଣା ମନେପଡିଲେ ଲାଗେ ବୈଦ୍ୟନାଥ ବାବୁ କୁଆଡ଼େ ଯାଇ ନାହାଁନ୍ତି ଏଇଠି ଆମ ପାଖରେ ସଦାସର୍ବଦା ଅଛନ୍ତି । ଆମ ଚିନ୍ତାରେ ଆମ ଚେତନାରେ ଆମ ଅନୁଭବରେ ସେ ପାଖେ ପାଖେ ଅଛନ୍ତି ।

ସେହିଦିନ ସଂଧ୍ୟାବେଳର କଥା ଶୁଣିଲେ ଏବେ ବି ଚମକିଉଠୁ ଆମେ ଦୁଇଜଣ । ମୋର ସ୍ୱାମୀ ଏବଂ ମୁଁ ଟି. ଭି. ଦେଖୁଥାଉ । ହଠାତ୍ ମୋ ପୁଅ ଉପରକୁ ଆସି କହିଲା ନନା, ବୈଦ୍ୟନାଥ ମଉସା ଚାଲିଗଲେ । ଜଣେ ଲୋକ ତୁମକୁ ଖବର ଦେବାକୁ କହି ଚାଲିଗଲେ । ହେ ଭଗବାନ, ମତେ ଲାଗିଲା ସବୁଆଡ଼େ ଯେପରି ପବନ ବନ୍ଦ ହୋଇ ଯାଇଛି । ଆମେ ଦୁଇଜଣ କେହି କାହାକୁ କିଛି କହି ପାରି ନ ଥିଲୁ । ସେ ଲୋକ କିଏ ଆସିଥିଲା କଣ କହିଲା କିଛି ବୁଝିବାକୁ ମଧ୍ୟ ଯାଇ ପାରୁନଥିଲୁ । କଣ ମିଳିବ ! ଭାବନା ରହିତ ଭାବେ କଟିଗଲା । ତା ପରେ ମୋର ସ୍ୱାମୀ ତାଙ୍କ ଘରକୁ ଗଲେ । ମୋର ସାହସ ହେଲାନି ସେଠାକୁ ଯିବାକୁ । କାରଣ ଶବ ଦେଖିଲେ ବିଶ୍ୱାସ ହୋଇଯିବ ସତରେ ସେ ଚାଲିଗଲେ ବୋଲି । ନ ଦେଖିଲେ ମନେହେବ ସେ ତାଙ୍କ ଘରେ ଅଛନ୍ତି । ତେଣୁ ମୋର ଯିବା ହୋଇପାରିଲାନି । ହେମନାମାଙ୍କୁ ଯାଇ କଣ କହିବ ? ଏତେ ସରଳ କୋମଳ ପ୍ରାଣଟି କିପରି ଏ ଧକ୍କା ସହିବ, ଏ ଚିନ୍ତା ମତେ ସାରାରାତି ଆଚ୍ଛନ୍ନ କରିଥିଲା । ଶ୍ମଶାନରୁ ମୋ ସ୍ୱାମୀ ଫେରିଲା ପରେ ମଧ୍ୟ

ମୋର ସାହସ ହେଉ ନ ଥିଲା କିଛି ପଚାରିବାକୁ । ସକାଳ ହେବାପରେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକ ମୋ ମନରେ ଟିକେ ସାହସ ସଞ୍ଚୟ କଲା ହେମନାମାଙ୍କୁ ସାମ୍ନା କରିବାକୁ ମୁଁ ପାଇଥିଲି । ବର୍ଷେ ପାଖାପାଖି ହୋଇଗଲାଣି, ଆଉଥରେ ହେମନାମାଙ୍କ ପାଖକୁ ଯିବାକୁ ମୋ ଭିତରେ ସାହସ ହୋଇପାରୁନି । ଘରେ ଥାଇ ଜଗନ୍ନାଥଙ୍କୁ ଡାକୁଛି, ହେ ଭଗବାନ୍, ହେମନାମାଙ୍କୁ ଧୈର୍ଯ୍ୟ ଦିଅ, ଶକ୍ତି ଦିଅ । ସେ ବୈଦ୍ୟନାଥ ବାବୁଙ୍କ ପିଲାମାନଙ୍କ ପାଇଁ ସବୁବେଳେ ସୁସ୍ଥ ଥା'ନ୍ତୁ, ଏହାହିଁ ତୁମକୁ ପ୍ରାର୍ଥନା ।

ବୈଦ୍ୟନାଥ ବାବୁ ଏକ ସଫଳ ଡାକ୍ତର, ଉଦାର ହୃଦୟର ସ୍ୱାମୀ ତଥା ପିତା ତଥା ଜଣେ ସ୍ନେହୀ ବନ୍ଧୁବତ୍ସଳ ମଣିଷ ଥିଲେ । କର୍ତ୍ତବ୍ୟ ପରାୟଣତାରେ ମଧ୍ୟ ବିରଳ ବ୍ୟକ୍ତିତ୍ୱ ଥିଲେ । ତାଙ୍କର ମୃତ୍ୟୁ ପରେ ଆଜି ପୁରୀ ସହରର ଜନସାଧାରଣ ଏକ କର୍ତ୍ତବ୍ୟକର୍ମୀ ଡାକ୍ତରର ଅଭାବ ଅନୁଭବ କରୁଛନ୍ତି । ତାଙ୍କ ହାତ ଲାଗିଲେ ରୋଗୀ ସୁସ୍ଥ ହୋଇଯିବ, ଏ ଧାରଣା ଅନେକ ଲୋକଙ୍କର ଥିଲା । ସେଥିପାଇଁ ମୁଁ ବେଳେ ବେଳେ ତାଙ୍କୁ ପରିହାସ କରୁଥିଲି ସାକ୍ଷାତ ଧନ୍ୱନ୍ତରୀ ବୋଲି । ସେଇ ହସ ହସ ମୁହଁରେ ସେ ଉତ୍ତର ଦିଅନ୍ତି—"ତେବେ ବୈଦ୍ୟନାଥ ନାଁ ଟା ବଦଳେଇ ଧନ୍ୱନ୍ତରୀ ମିଶ୍ର ବୋଲି ରଖିଦେଲେ ଭଲ ହୁଅନ୍ତା ।" ଦୁନିଆକୁ ଅନେକ ଲୋକ ଆସିଥାନ୍ତି, କିନ୍ତୁ ସମସ୍ତେ କଣ ଐଶ୍ୱରିକ ଗୁଣ ନେଇ ଆସିଥାନ୍ତି !! ବୈଦ୍ୟନାଥ ବାବୁଙ୍କ ଉପରେ ଈଶ୍ୱରଙ୍କ ଆଶୀର୍ବାଦ ରହିଥିଲା । ସେ ସବୁବେଳେ ଗୋଟିଏ କଥା କହୁଥିଲେ । ଜୀବନରେ ଆମେ ସବୁକିଛି ପାଇଛୁ ଆଉ କିଛି ପାଇବାର ଆଶା ନାହିଁ ; ଖାଲି ଦରକାର ମୃତ୍ୟୁବେଳକୁ ଯେପରି ଟିକିଏ ବି କଷ୍ଟ ନ'ହୋଇ ପାଞ୍ଚ ମିନିଟରେ ଜୀବନଟା ବାହାରିଯିବ, ତା' ପୁଣି କେବଳ ଆକ୍‌ସିଡେଣ୍ଟ ବା ହାର୍ଟ ଆଟାକରେ । ସତକୁ ସତ ଭଗବାନ ତାଙ୍କ କଥା ରଖିଲେ । କେହି ଜାଣିପାରିଲେନି ସମସ୍ତଙ୍କର ପ୍ରିୟ ଡାକ୍ତର କେତେବେଳେ କେଉଁ ମୁହୂର୍ତ୍ତରେ ମୃତ୍ୟୁ କୋଳରେ ଢଳି ପଡ଼ିଲେ । ହେ ଭଗବାନ୍, ତୁମେ କଣ ସତରେ ଏମିତି ମଣିଷର ଇଚ୍ଛା ପୂରଣ କର !



ଦତ୍ତତୋଟା, ପୁରୀ

# ସୁବକ୍ତା

**ଚନ୍ଦ୍ରଶେଖର ନନ୍ଦ**

ବକ୍ତୃତା ବି ସାହିତ୍ୟ ।

ଅବଶ୍ୟ ବକ୍ତୃତା ପାଇଁ କେହି ସାହିତ୍ୟ ଏକାଡେମୀ ପୁରସ୍କାର ପାଇନାହାଁନ୍ତି, ବ୍ୟାସ ବାଲ୍ମୀକି ପୁରସ୍କାର ପାଇନାହାଁନ୍ତି । କିନ୍ତୁ ବକ୍ତୃତା ଯାହା ପାଏ ଲେଖା ତା ପାଏନା । ବକ୍ତୃତା ଲୋକଙ୍କୁ ହସେଇ ପାରେ, କନ୍ଦେଇ ପାରେ, ତତେଇ ପାରେ, ମତେଇ ପାରେ । ବକ୍ତା ଯେଉଁ ଢଙ୍ଗରେ ଗୃହୀତ ତା ଶ୍ରୋତାଙ୍କୁ ସେଇ ଢଙ୍ଗରେ ଉତ୍ତେଜିତ କରି ଦେଇ ପାରେ । ବକ୍ତୃତା ସୃଷ୍ଟି କରେ ବିପ୍ଳବ, ସୃଷ୍ଟି କରେ ବିଦ୍ରୋହର ଅଗ୍ନ୍ୟୁତ୍ପାତ । ପୁଣି ବକ୍ତୃତା ହିଁ ବିଦ୍ରୋହକୁ ଶାନ୍ତ କରେ, ବିପ୍ଳବକୁ ନିସ୍ତରଙ୍ଗ କରେ । ଏହି ବକ୍ତୃତା ନୂଆ ଖାଳିରେ ରକ୍ତାକ୍ତ ସଂଗ୍ରାମ କରେଇଛି ପୁଣି ହାତରୁ ଖଣ୍ଡା ଖସେଇ ଦେଇଛି । ଭାରତ ଚୀନ ଯୁଦ୍ଧବେଳେ ବୀରେନ୍ ମିତ୍ରଙ୍କ ବକ୍ତୃତା ଶୁଣି ସ୍ତ୍ରୀ ଲୋକମାନେ ଦେହରୁ ସୁନାର ହାର ଖୋଲି ଦେଇ ଦେଇଛନ୍ତି ଜବାନମାନଙ୍କ ସାହାଯ୍ୟ ପାଇଁ । ଇଏ ତ ଆଖି ଦେଖା ଘଟଣା ।

ବକ୍ତା ବକ୍ତୃତା ଦେଲାବେଳେ ସରସ୍ୱତୀ ଓହ୍ଲେଇ ଆସି ବିରାଜମାନ କରନ୍ତି ତା କଣ୍ଠରେ । ସାହିତ୍ୟ ଝୁରିଯାଏ ବକ୍ତାମାନଙ୍କ ଗତି ପଥରେ ।

ବୈଦ୍ୟନାଥ ମିଶ୍ର ଥିଲେ ଜଣେ ସୁବକ୍ତା । ୧୯୬୩ ମସିହା ସେପ୍ଟେମ୍ବର ମାସର କୌଣସି ଏକ ତାରିଖ । କଲେଜ ପିଲାମାନଙ୍କ ପାଇଁ ଏକ ସର୍ବଭାରତୀୟ ବକ୍ତୃତା ପ୍ରତିଯୋଗିତା ହଉଥାଏ । ଏଚ. ପି. ମୁଖାର୍ଜୀ ବକ୍ତୃତା ପ୍ରତିଯୋଗୀତା । ଆରମ୍ଭ ହବ ସନ୍ଧ୍ୟା ଛଅଟା ବେଳକୁ । ମୁଁ ଟ୍ରାମ ବସ ଚଢି କୌଣସିମତେ ଆସି ପହଞ୍ଚିଲି କଲିକତା ବିଶ୍ୱବିଦ୍ୟାଳୟରେ । ପଚାରି ପଚାରି କରି ଉଦ୍ଦିଷ୍ଟ ହଲ ପାଖରେ ପହଞ୍ଚିଲି ବେଳକୁ ଛଅଟା ବାଜେ କି ବାଜେ ।

ହଲ ବାରଣ୍ଡାରେ ଦେଖା ହେଇଗଲା ବୈଦ୍ୟନାଥ ବାବୁଙ୍କ ସାଙ୍ଗରେ । ଓଡ଼ିଶାରୁ ବଛା ହେଇ ଦୁଇଜଣ ଆସିଥାନ୍ତି । ବୈଦ୍ୟନାଥ ବାବୁ ଜଣେ,

ବସିନ ପଣ୍ଡା ଜଣେ, ମୁଁ ଜଣେ, ଚତୁର୍ଥ ଜଣଙ୍କ ନାଁ ମୋର ମନେ ପଡ଼ୁନାହିଁ ।

ସ୍ୱାବ ହ୍ଲକର ଷ୍ଟଡରେ ଆମେ ଲଗାଲଗି ହୋଇ ଭିତରକୁ ପଶିଲୁ ଓ ପାଖାପାଖି ବସିଲୁ । ହଲ ପ୍ରେକ୍ଷାଳୟକୁ ଗ୍ରୁହାରଣ୍ୟ । ହଲ ଭିତରଟି ବେଶ ରଙ୍ଗ ରଙ୍ଗିଆ ଦିଶୁଥାଏ । ବିଭିନ୍ନ ରଙ୍ଗରେ ରଂଜିତ ବିଭିନ୍ନ ବେଶ ପୋଷାକରେ ସୁସଜ୍ଜିତ ଝିଅମାନେ ହଲଟିକୁ ଅଧିକ ଆକର୍ଷଣୀୟ କରିଥାନ୍ତି । କହିବା ବାହୁଲ୍ୟ ସେମାନଙ୍କର ପ୍ରେମେନକା ଉପସ୍ଥିତି ଆମମାନଙ୍କର ଧ୍ୟାନ ତଥା ଏକାଗ୍ରତାକୁ ବହୁଧା ବିଘ୍ନିତ କରୁଥାଏ । ଆଗରେ ବକ୍ତୃତା ରୂପକ ପରୀକ୍ଷା । ଆଖିକୁ ଯେତେ ମନା କଲେବି ଆଖି ମନା ମାନୁ ନଥାଏ ।

ପ୍ରତିଯୋଗିତା ଆରମ୍ଭ ହେଲା । ବିଷୟବସ୍ତୁ ଥାଏ । "Non Alignment Policy of India" କହିବାକୁ ହବ ଇଂରାଜୀରେ । ଭାରତର ବିଭିନ୍ନ ପ୍ରଦେଶରୁ ଆସିଥିବା ବକ୍ତାମାନେ ଜଣକ ପରେ ଜଣେ ବକ୍ତୃତା ଦେବା ଆରମ୍ଭ କଲେ । ବକ୍ତାର ସାମାନ୍ୟ କିଛି ତ୍ରୁଟି ବିଚ୍ୟୁତିକୁ ଅସହିଷ୍ଣୁ ଶ୍ରୋତାମାନେ ସହ୍ୟ କରୁନଥାନ୍ତି । ସେମାନଙ୍କର ହାସ୍ୟରୋଳ ଭିତରେ ବକ୍ତା ବିଚରାଟି ଅପ୍ରସ୍ତୁତ ହୋଇ ପଡୁଥାଏ । ପିଲାଦିନେ ପଢିଥିବା ସଂସ୍କୃତ ଶ୍ଳୋକଟିଏ ମୋର ମନେ ପଡ଼ିଲା— ତାବତ୍ ଭୟସ୍ୟ ଭେତବ୍ୟଂ... । କଥାଟିକୁ ଏକାନରୁ ସେକାନ କରି ଆମେ ଚାରିଜଣ ସାହସ ସଞ୍ଚୟ କରିନେଲୁ । ଆମ ପାଳି ପଡିଲେ ଆମେ ଲମ୍ଫଂ ପ୍ରଦାନ କଲୁ । ଶ୍ରୋତାମାନଙ୍କୁ ହସିବାକୁ ସୁଯୋଗ ଦେଇ ନ ଥିଲୁ ।

ଆମେ ଚାରିଜଣ ଯାକ ଭଲ କହିଥିଲୁ । ଅନ୍ୟମାନେ ବି ଖୁବ୍ ଭଲ କହିଥିଲେ ।

ବକ୍ତୃତା ବୈଦ୍ୟନାଥ ବାବୁଙ୍କୁ କିଛି ଏକାଦିନକେ ସର୍ବଭାରତୀୟ ପ୍ରାଙ୍ଗଣରେ ପହଞ୍ଚାଇ ଦେଇ ନଥିଲା । ସେ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜର ଛାତ୍ର ସଂସଦର ଥିଲେ ସଂପାଦକ । ତାଙ୍କ ପୂର୍ବରୁ ପୁଷ୍ପ ସାମନ୍ତ ଚନ୍ଦ୍ରଶେଖର କଲେଜର ଛାତ୍ର ସଂସଦର ଥିଲେ ସଂପାଦକ । ଏସବୁ ପଛରେ ତାଙ୍କର ବନ୍ଧୁବତ୍ସଳତା, ସାଂଗଠନିକ ସାମର୍ଥ୍ୟ ଆଦି ନିଶ୍ଚୟ ଥିଲା, କିନ୍ତୁ

ମୂଳ କଥା ଥିଲା ତାଙ୍କର ସୁନ୍ଦର ତଥା ବଳିଷ୍ଠ ବକ୍ତୃତା । ବକ୍ତୃତା ଭିତର ଦେଇ ସେ ଅନ୍ୟମାନଙ୍କୁ ଛୁଇଁ ପାରୁଥିଲେ, ଅନ୍ୟମାନଙ୍କୁ ଆକର୍ଷଣ କରିପାରୁଥିଲେ, ଅନ୍ୟମାନଙ୍କ ସହିତ ସୌଖ୍ୟ ସ୍ଥାପନ କରିପାରୁଥିଲେ, ସେଥିଯୋଗୁ ପରବର୍ତ୍ତୀ କାଳରେ ତାଙ୍କୁ ଓଡ଼ିଶା ମେଡ଼ିକାଲ ସର୍ଭିସେସ ଆସୋସିଏସନ ଭଳି ଏବଂ ପ୍ରାଦେଶିକ ସଂଗଠନର ଦାୟିତ୍ୱ ତୁଲାଇବାକୁ ବନ୍ଧୁମାନେ ଅନୁରୋଧ କରିଥିଲେ ।

ବନ୍ଧୁବତ୍ସଳ ବୈଦ୍ୟନାଥ ବାବୁ ବନ୍ଧୁମାନଙ୍କ କଥା ଭାଙ୍ଗି ପାରିଲେ ନାହିଁ । ବସି ବସି ସାଧାରଣ ସଂପାଦକର ଦାୟିତ୍ୱ ବହନ କଲେ । କ୍ରମେ ବନ୍ଧୁ ଡାକ୍ତର ମାନଙ୍କର ସମସ୍ୟା ସହିତ ସେ ଏତେ ବେଶୀ ଜଡ଼ିତ ହୋଇଗଲେ ଯେ ସେମାନେ ତାଙ୍କୁ ଛାଡ଼ିଲେ ନାହିଁ, ସେମାନଙ୍କ ସମସ୍ୟା ତାଙ୍କୁ ଛାଡ଼ିଲା ନାହିଁ । ସାଧାରଣ ସଂପାଦକରୁ ସେ ହେଲେ ଉପସଭାପତି ।

୧୯୮୯ ମସିହା ଡିସେମ୍ବର ମାସ ନଅ ତାରିଖ । ଉପସଭାପତି ବୈଦ୍ୟନାଥ ବାବୁ ଓଡ଼ିଶା ମେଡିକାଲ ସର୍ଭିସେସ ଆସୋସିଏସନର ସାଂଗଠନିକ କାମରେ ଆସି ପହଞ୍ଚିଲେ କଟକରେ । ସଭାହେଲା । ସମସ୍ୟା ସମ୍ବନ୍ଧରେ ଆଲୋଚନା ହେଲା । ବକ୍ତୃତା ହେଲା ।

କିନ୍ତୁ କିଏ ଜାଣିଥିଲା ଯେ ଏ ତାଙ୍କର ଶେଷ ବକ୍ତୃତା ! ଶେଷ ସଭା ! ଶେଷ ଆଲୋଚନା ।

ବୈଦ୍ୟନାଥ ବାବୁ ତାଙ୍କ କର୍ମକ୍ଷେତ୍ର ପୁରୀକୁ ଫେରୁଥିଲେ । କିନ୍ତୁ ଫେରି ପାରିଲେ ନାହିଁ । ଫେରିବା ବାଟରୁ ଫେରିଗଲେ ।

ଜଣେ ସୁବକ୍ତା ଅସ୍ତ ହେଲେ ।

ଭଲ ବକ୍ତାଟିଏ ହବା ପାଇଁ ବହୁତ ସାଧନା ଦରକାର । ବହୁତ ଅଧ୍ୟବସାୟ ଦରକାର । ବହୁତ ଅଭ୍ୟାସ ଦରକାର । ଓଡ଼ିଶାର ସୁନାମଧନ୍ୟ ବକ୍ତା ଅଧ୍ୟାପକ ଗୌରି କୁମାର ବ୍ରହ୍ମା କହନ୍ତି, ବଛନ୍ଦ ଚରଣ ପଟ୍ଟନାୟକଙ୍କୁ ଏ ଜାତି ମନେ ରଖିବା ପାଇଁ ତାଙ୍କର ବହୁ କୃତି ରହିଛି ।

ସେ ସାହିତ୍ୟ ସୃଷ୍ଟି କରିଛନ୍ତି, ସାହିତ୍ୟ ଉଦ୍ଧାର କରିଛନ୍ତି, ବକ୍ତା ସୃଷ୍ଟି କରିଛନ୍ତି, ବକ୍ତା ମାନଙ୍କ ଦ୍ୱାରା ସାରା ଓଡ଼ିଶାରେ ଓଡ଼ିଆ ସଂସ୍କୃତିର ଜାଗରଣ କରିଛନ୍ତି । ବିଶ୍ୱନାଥ ଚରଣ ଅନ୍ୟ କିଛି ନକରି ଯେତିକି ବକ୍ତା ସୃଷ୍ଟି କରିଛନ୍ତି, ଯଦି ସେତିକରେ କଳଙ୍ଗଭାରତୀ ଅନୁଷ୍ଠାନର ସମସ୍ତ କାର୍ଯ୍ୟକ୍ରମକୁ ସୀମିତ ରଖିଥାନ୍ତେ, ତଥାପି ଏ ଜାତି ତାଙ୍କ ନିକଟରେ ଋଣୀ ରହିଥାନ୍ତା । କାରଣ କଳଙ୍ଗଭାରତୀ ଅନୁଷ୍ଠାନରୁ ଆସିଥିବା ଯୁବକ୍ତାମାନେ ଅବଲୀଳା କ୍ରମେ ଲୋକଙ୍କୁ ନିଜ ବକ୍ତୃତାରେ ବାନ୍ଧି ରଖି ପାରୁଛନ୍ତି, ଲୋକଙ୍କୁ ସ୍ପର୍ଶ କରି ପାରୁଛନ୍ତି, ଓଡ଼ିଆ ମାନଙ୍କୁ ଓଡ଼ିଆତ୍ୱରେ ଉଦବୃଦ୍ଧ କରି ପାରୁଛନ୍ତି ।

ମୋ ଜାଣତରେ ବକ୍ତୃତା ଶିଖିବା ପାଇଁ ବୈଦ୍ୟନାଥ ବାବୁଙ୍କୁ କଳିଙ୍ଗ ଭାରତୀ ଅନୁଷ୍ଠାନ ଭଳି କୌଣସି କ୍ଷେତ୍ର ମିଳି ନଥିଲା । ବିଶ୍ୱନାଥ ଚରଣଙ୍କ ଭଳି କୌଣସି ଗୁରୁତ୍ୱ ମିଳି ନଥିଲେ । ପ୍ରତି ସପ୍ତାହରେ ବିଭିନ୍ନ ବିଷୟରେ ବକ୍ତୃତା ଦବା, ତା'ର ଭୂଲ ଠିକ୍ ବିଷୟରେ ଅବଗତ ହବା, ତାଙ୍କୁ ଠିକ୍ ଭାବରେ ସଜାଡି ନେବାର ବିଧିବଦ୍ଧ ଅବକାଶ ତାଙ୍କୁ ଯୁଟି ନଥିଲା । ବିଭିନ୍ନ ସଭା ସମିତିରେ ପିଲାଦିନରୁ ନିଜର ବକ୍ତୃତାକୁ ବାରମ୍ବାର ପରଖି ନେବାର ସୁଯୋଗ ତାଙ୍କୁ ମିଳି ନଥିଲା ।

ତଥାପି ତଥାପି ସେ ଥିଲେ ବକ୍ତା
ଖୁବ୍ ଉଚ୍ଚକୋଟୀର ବକ୍ତା
ନିଜର ସାଧନା, ନିଜର ଅଧ୍ୟବସାୟ, ନିଜର ପ୍ରଚେଷ୍ଟା
ତାଙ୍କୁ ତାଙ୍କର ନ୍ୟାଯ୍ୟ ଆସନରେ ପ୍ରତିଷ୍ଠିତ
କରାଇ ପାରିଥିଲା ।

-○-

# ସ୍ମୃତି ତର୍ପଣ



ଡଃ ସଦାଶିବ ମହାପାତ୍ର

ଦେଖୁଁ ଦେଖୁଁ ବର୍ଷେ ବିତିଗଲା । କାଲି ପରି ଲାଗୁଛି । ବିଜୟ ଚତୁର୍ଦ୍ଦଶୀ ପର୍ବଟି ପାଳନ କରିବା ପାଇଁ ଗାଁକୁ ଯାଇଥାଏ । ଗାଁ ମୁଣ୍ଡରେ ଗୋଡ଼ି ଦେଲାବେଳକୁ ସବୁ ଶୁନ୍‌ଶାନ୍ ଦେଖିଲି । ଏ ପର୍ବଟି ଆମ ଗାଁ ବୀରନରସିଂହପୁରର ଏକ ସ୍ୱତନ୍ତ୍ର ପର୍ବ । ଗାଁରେ ସମସ୍ତେ ଏହାକୁ ସାନ ଶୀତଳଷଷ୍ଠୀ କହନ୍ତି । ଗାଁର ଇଷ୍ଟଦେବ ଶ୍ରୀ ନୀଳକଣ୍ଠ ମହାପ୍ରଭୁଙ୍କ ପାଇଁ ବିଭିନ୍ନ ଭୋଗରାଗର ପ୍ରସ୍ତୁତି ସାଙ୍ଗକୁ ପର୍ବ ଉପଲକ୍ଷେ ବହୁଦିନ ପରେ ଗାଁକୁ ଆସିଥିବା ପ୍ରବାସୀ ଗ୍ରାମବାସୀ ଓ ନିମନ୍ତ୍ରିତ ଅତିଥିମାନଙ୍କ କୋଳାହଳରେ ଗାଁଟି ପ୍ରାୟ ମୁଖରିତ ହୋଇଥାଏ । ଏ କୋଳାହଳ ପରିପ୍ରେକ୍ଷୀରେ ରହିଯାଇଥିବା ନୀରବତା ମନରେ ଶଙ୍କା ଆଣିଦେଲା । ଘର ଭିତରକୁ ପଶିଗଲାବେଳକୁ ଶୁଣିଲି "ଧନୁ ଭାଇନା" ଆଉ ନାହାନ୍ତି । କେତୋଟି ମୁହୂର୍ତ୍ତ ନୀରବ ନିସ୍ପନ୍ଦ ଭାବରେ ଠିଆହୋଇ ରହିଲି, ବିଶ୍ୱାସ କରିପାରିଲି ନାହିଁ ସତରେ ଏମିତି ଏକ ଦୁଃଖଦାୟକ ଘଟଣା ଏ ଭିତରେ ଘଟି ଯାଇଛି ବୋଲି । ତାଙ୍କ ସ୍ମୃତିଗୁଡ଼ିକ ଗୋଟିକ ପରେ ଗୋଟିଏ ଆଖି ଆଗରେ ନାଚିଗଲା । ଗୋଟିଏ ଭାରାକ୍ରାନ୍ତ ମନନେଇ ରାତିଟି କଟାଇ ତା ପରଦିନ ସକାଳୁ ତାଙ୍କ ପୁରୀ ବାସଭବନରେ ପହଞ୍ଚିଗଲି । ସାନ୍ତ୍ୱନା ଦେବାକୁ ଆସିଥିବା ଶହଶହ ଶୁଭେଚ୍ଛୁ ବନ୍ଧୁଙ୍କ ଭିତରେ ଶୋକସନ୍ତପ୍ତ ପରିବାରକୁ ବୁଝାଇ କହିବା ପାଇଁ ଭାଷା ନଥିଲା । ପ୍ରକୃତିର ଏ ନିଷ୍ଠୁର ନିୟମକୁ କେବଳ ଲକ୍ଷ୍ୟକରି ଫେରି ଆସିଥିଲି ।

ଡଃ ବୈଦ୍ୟନାଥ ମିଶ୍ରଙ୍କ ସଙ୍ଗେ ମୋ ସଂପର୍କ ଥିଲା ଦୁଇସ୍ତରୀୟ । ସେ ମୋ ନନାଙ୍କର ବଡ଼ ଭଉଣୀର ପୁଅ । କିନ୍ତୁ ପୋଷ୍ୟପୁତ୍ର ହିସାବେ ଯାଇଥିଲେ ମୋ ଅଜାଙ୍କ ଭଉଣୀ ଘରକୁ । ସେଥିପାଇଁ ତାଙ୍କ ସାଙ୍ଗରେ ଆମର ଏକ ସ୍ୱତନ୍ତ୍ର ସଂପର୍କ ରହି ଆସିଥିଲା । ଆମ ପାରିବାରିକ ସଂପର୍କର ସାମୟିକ ଅସ୍ୱାଭାବିକତା ଭିତରେ ମଧ୍ୟ ଆମେ ପରସ୍ପରର ଅତି ନିକଟତର ଥିଲୁ । ମୁଁ ତାଙ୍କୁ ଜଣେ ଆଦର୍ଶ ବ୍ୟକ୍ତି ଭାବରେ ଅନୁସରଣ କରି ଆସୁଥିଲି । ଗାଁରେ ତାଙ୍କୁ ବୈଦ୍ୟନାଥ ନାମରେ ପ୍ରାୟ କେହି ଡାକନ୍ତିନି । 'ଠୁକୁ', 'ବାବୁଜୀ', ଓ 'ଧନୁ' ନାମରେ ସେ ପରିଚିତ ଥିଲେ । ଶେଷୋକ୍ତ

ନାଁଟି ମାମୁଁଘରଠାରୁ ଥିଲା । ତେଣୁ ଆଗେ ସବୁ ତାଙ୍କୁ "ଧନୁଭାଇନା" ବୋଲି ଡାକୁଥିଲୁ । ସେ ଛାତ୍ରାବସ୍ଥାରୁ ବେଶ୍ ସୁପରିଚିତ ଥିଲେ । ଦୁଃସାହସୀ, ଓଜସ୍ୱିନୀ ବକ୍ତା, ଜଣେ ଉତ୍ତମ ସଙ୍ଗଠକ ଓ ସର୍ବୋପରି ଜଣେ ଆଦର୍ଶ ଛାତ୍ର ଭାବେ ସର୍ବତ୍ର ପରିଚିତ ଥିଲେ । ଜାଣିପାରି ନାହିଁ, ମୁଁ ବୋଧହୁଏ ଅଷ୍ଟମ ଶ୍ରେଣୀରେ ପାଠ ପଢୁଥିଲି, କେଉଁ କାମ ଯୋଗୁ କଟକ ଆସିଥିଲି ତାଙ୍କ ପାଖକୁ । ସେତେବେଳେ ସେ କଟକ ମେଡିକାଲ କଲେଜର ଛାତ୍ର । ସେଦିନ ବଣଭୋଜି ପାଇଁ ଧନୁଭାଇନା ହଠାତ୍ କୁଆଡ଼େ ଚାଲିଗଲେ । ମୁଁ ତାଙ୍କ ହଷ୍ଟେଲ ରୁମରେ ଥାଏ । ତାଙ୍କର କେତେକ ସହପାଠୀ ତାଙ୍କ ରୁମ୍‌କୁ ଆସିଥିଲେ । ମତେ ବି ତାଙ୍କର ଜଣେ 'ଭାଇ' ଜାଣି ଆଦର କଲେ । ସମସ୍ତଙ୍କ ମୁହଁରେ ତାଙ୍କର ପ୍ରଶଂସା ଶୁଣି ମତେ ବହୁତ ଖୁସି ଲାଗୁଥାଏ ।

ଚାକିରି ଜୀବନରେ ସେ ଜଣେ ନୈଷ୍ଠିକ କର୍ମଯୋଗୀ ଥିଲେ । ଉପର ମହଲରେ ଧରାଧରି କରି ବା ଉତ୍କୋଚ ଦେଇ ଚାକିରି ଓ ବ୍ୟକ୍ତିଗତ ସ୍ତରରେ କୌଣସି କାମ ହାସଲ କରିବାର ସେ ଘୋର ବିରୋଧୀ । ସମ୍ବଲପୁରରେ ଯାହା ଦିନ ରହିବା ପରେ ଥରେ ମତେ ଚିଠି ଲେଖିଲେ, "ବଦଳି ଯଦି ସେ ଆଡ଼କୁ କୁଆଡ଼େ ହୋଇପାରିବ ଭଲକଥା କିନ୍ତୁ ମନ୍ତ୍ରୀଙ୍କ ପାଖରେ ନେହୁରା ହୋଇ ପାରିବିନି କି ଉତ୍କୋଚ କାହାରିକି ଦେଇ ପାରିବିନି," କଥାରେ ଓ କାମରେ ତାଙ୍କର ବିପ୍ଳବର ସ୍ଫୁଲିଙ୍ଗ ଚତୁର୍ଦ୍ଦିଗକୁ ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ କରିଥିଲା ସିନା ହେଲେ ତାଙ୍କ ବ୍ୟକ୍ତିତ୍ୱର ପରାଜୟ କେବେ କେଉଁଠି ଘଟି ନ ଥିଲା । ମୋର ତାଙ୍କ ସଙ୍ଗେ ଆମ ଗାଁରେ ବିଭିନ୍ନ ପର୍ବପର୍ବାଣୀରେ ଦେଖାହେଲେ ତାଙ୍କ ଚାକିରି ଜୀବନର ବିଭିନ୍ନ ପ୍ରତିକୂଳ ଜନିତ ଅନୁଭୂତି ଶୁଣିବା ପାଇଁ ମୁଁ ଉତ୍କଣ୍ଠିତ ହୋଇ ଉଠୁଥିଲି । ତାଙ୍କର ସେଇ ଅନ୍ତଃସ୍ୱର ସହ ମୁଁ ନିବିଡ଼ ଭାବରେ ପରିଚିତ ଥିଲି ବୋଲି ତ ତାଙ୍କ ସାଙ୍ଗରେ ମୋର ଅନ୍ତରଙ୍ଗତା ଭିନ୍ନ ପ୍ରକାର ଥିଲା । ସେଥିପାଇଁ ବିଭିନ୍ନ ବ୍ୟକ୍ତିଗତ ସୁବିଧା ଅସୁବିଧା ଜଣେଇ ସେ ମତେ ଚିଠି ଲେଖୁଥିଲେ । ଆଜି ଆଉ ଧନୁଭାଇନା ନାହାନ୍ତି । ଶେଷରେ ନିଜ ଘର ପାଖକୁ ବଦଳି ହୋଇ

ଆସିଲେ । କିନ୍ତୁ ବେଶୀ ଦିନ ଆଉ ରହିପାରିଲେନି । ହଠାତ୍ ଏକ କର୍ମୀମୁଖର 'ଓମ ସାଂମିଟିଙ୍ଗରୁ ଫେରିଲା ବେଳେ ଶେଷ ନିଃଶ୍ୱାସ ଛାଡ଼ିଥିଲେ । ତାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ବନ୍ଧୁ ତଥା ସହକର୍ମୀ ଜଗନ୍ନାଥ ବାବୁଙ୍କଠାରୁ ପରେ ଶୁଣିଲି ଯେ ସେଦିନ ମିଟିଙ୍ଗଟି ତାଙ୍କ ଓଜସ୍ୱିନୀ ଭାଷଣରେ ଜୀବନ୍ତ ହୋଇ ଉଠିଥିଲା । ଜଗନ୍ନାଥ ଭାଇନା ( ଜଗାଭାଇନା ) ଆମ ଗାଁ ପାଖର ଲୋକ ଓ ତାଙ୍କର ବାଲ୍ୟବନ୍ଧୁ । ଛାତ୍ର ଜୀବନରେ ମଧ୍ୟ ତାଙ୍କର ବହୁତ ଅନ୍ତରଙ୍ଗ ଥିଲେ । ଶେଷରେ ତାଙ୍କର ସାଙ୍ଗରେ ଗାଡ଼ିରେ ଫେରିଲାବେଳେ ସେ ସମସ୍ତଙ୍କୁ ଛାଡ଼ି ଚାଲିଗଲେ । ତାଙ୍କ ବିଦାୟର ବର୍ଷେ ପୂରିଗଲା ପରେ ବି ଏ ନିଷ୍ଠୁର ସତ୍ୟକୁ ମନ ଏମିତି ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ତାଙ୍କ ସାଙ୍ଗରେ ଜଡ଼ିତ ଥିବା ଅନେକ ସ୍ନେହଭରା ସ୍ମୃତିକୁ ଶେଷ ପର୍ଯ୍ୟନ୍ତ ମନରେ ସାଇତି ରଖି ତାଙ୍କ ଆଦର୍ଶକୁ ଆଗେଇ ନେବା ହିଁ ହେବ ତାଙ୍କପାଇଁ ଆମର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।



ବୀରନରସିଂହପୁର
ପୁରୀ

# କାହିଁ ବୈଦ୍ୟନାଥ

ଶ୍ରୀ ଶଶିଭୂଷଣ ରଥ

କାହିଁ ବୈଦ୍ୟନାଥ କରୁଣ ଅନାଥ
କେଉଣେ ଚାଲିଗଲ ତୁମେ
କେତେ ଖୋଜି ଖୋଜି ପଡ଼ିଲଣି ଥକି
ଆଉତ ଦେଖୁନି ଦିନେ ॥ ୧ ॥

ବାସ ଭବନରେ ବସି ଗ୍ରନ୍ଥପରେ
ରାସ୍ତା ଆଡ଼େ ଥାଏ ଲୟ
ସେଇ ବାଟେ ଗଲେ ଏବେ ଲୟୁଜଲେ
ଦିଶେ ମୋତେ ଶୂନ୍ୟ ପ୍ରାୟ ॥ ୨ ॥

କୁଳୀନ ବ୍ରାହ୍ମଣ ଶାସନେ ଜନମ
ହୋଇ ନରସିଂହ ପୁରେ
କଲ ପ୍ରାଥମିକ ଶିକ୍ଷା ହେ ଗ୍ରହଣ
ଗାଆଁ ଚଟଶାଳୀ ଘରେ ॥ ୩ ॥

ସେଠା ଥିଲେ ଜଣେ ପ୍ରବୀଣ ଶିକ୍ଷକ
ତାଙ୍କ କୋଳେ ଜନ୍ମ ହୋଇଁ
ପାଇଛ ନିଷ୍ଠାପୂ ସତ୍‌ଶିକ୍ଷା ଜୀବନେ
ପାଇଛ ମଣିଷ ହୋଇ ॥ ୪ ॥

ଉଚ୍ଚଶିକ୍ଷା ପାଇଁ ଶ୍ରୀକ୍ଷେତ୍ରରେ ଯାଇଁ
ପଢ଼ିଲ ଲେଖାଇ ନାମ
ଉଚ୍ଚ ବିଦ୍ୟାଳୟ ଶେଷ ପରୀକ୍ଷାରେ
ରଖିଲ ପ୍ରଥମ ସ୍ଥାନ ॥ ୫ ॥

କଲେଜରେ ପାଠ ପଢ଼ି କେତେ ବାଟ
ହୋଇବାକୁ ଚିକିତ୍ସକ
ରାମଚନ୍ଦ୍ର ଭଞ୍ଜ କଲେଜରେ ପଢ଼ି
ହୋଇଥିଲ କୃତୀ ଛାତ୍ର ॥ ୬ ॥

ଚିକିତ୍ସକ ହୋଇ ଚିକିତ୍ସାଳୟରେ
ଆରମ୍ଭ କରିଲ କାମ
ଚିକିତ୍ସକ ପୋଥି ପ୍ରଥମ ପୃଷ୍ଠାରେ
ଲେଖା ବୈଦ୍ୟନାଥ ନାମ ॥ ୭ ॥

ଯେତେ ଯେତେ ସ୍ଥାନେ କରିଛତ କାମ
ଏବେବି ନାହାନ୍ତି ଭୁଲି
ବୈଦ୍ୟନାଥ ବୋଲି କହିଲେ ଚିହ୍ନିବେ
ସେ ସ୍ଥାନର ମାଟି ବାଲି ॥ ୮ ॥

ନାକରୋଗ ବିଶେଷଜ୍ଞ ବୋଲି ତୁମ
ଉପାଧି ରହିଛି ଲେଖା
ନାହିଁ ଅହଂକାର ବିଳାସ ବ୍ୟସନ
ଆହାକି ମଧୁର କଥା ॥ ୯ ॥

ଚିକିତ୍ସାଳୟକୁ ଆସିବା ବେଳକୁ
କେତେ ରୋଗୀ ନର, ନାରୀ
ଗୃହିଁଥାନ୍ତି ସତେ ଗୃହିଁଦେଲେ କେତେ
ଯାଆନ୍ତି ରୋଗ ପାଶୋରି ॥ ୧୦ ॥

ଆଦର୍ଶ ଗୃହସ୍ଥ ଜୀବନୀ ତୁମର
ମାନବ ସମାଜେ ଲେଖା
ପୁତ୍ର, କନ୍ୟା ଭଳି ପୁତୁରା ଝିଆରୀ
ନାହିଁ ଭିନ୍ନାଭିନ୍ନ ଚିନ୍ତା ॥ ୧୧ ॥

ନାରୀ ଗର୍ଭୁଁ ଶିଶୁ ଜନ୍ମ ଜଣାଥିଲା
ଏ ଅତି ବିଚିତ୍ର କଥା
ନଜାଣି ପାରିଲି ନିଜର ମରଣ
ନକଲ ଚିକିତ୍ସା ଚିନ୍ତା ।୧୨।

ଉଦର ରୋଗରେ ମଡ଼କ ଯୋଗରେ
ହେଲା ମୋର ତନୁ କ୍ଷୀଣ
ଉପହାସ କଲେ ଯେ ମୋତେ ଦେଖିଲେ
( ଯାବନ୍ତ ) ବନ୍ଧୁବନ ବେଶିଜନ ।୧୩।

ଯମ ନିମନ୍ତ୍ରଣ ନକରି ବରଣ
ଗଲି ତୁମ ପାଖେ ଧାଇ
ଯେତେ ଉପଦେଶ ଦେଇଛ ହେ ମୋତେ
କଷ୍ଟ ଭୁଲିଯିବା ପାଇଁ ।।୧୪।।

ଚିକିତ୍ସା ଆରମ୍ଭ କଲଦେଇ ଦମ୍ଭ
ଆରୋଗ୍ୟ କରିଲ ମୋତେ
ଗୃହିଁଲେ ସେ ହାତ ଲେଖାକୁ ଦଶଇ
ଅବିକଳ ମୂର୍ତ୍ତି ନେବେ ।।୧୫।।

ରହିଗଲି ମୋତେ ଋଣ କରିଦେଇ
ଗୁଣି ହେବ ନିରନ୍ତର
ତୁମରି ଆତ୍ମାର ସଦ୍‌ଗତି ପାଇଁକି
ପ୍ରଭୁଙ୍କୁ କରେ ଜୁହାର ।।୧୬।।



ବୀରନରସିଂହପୁର
ପୁରୀ

# ଆଇନା

ଶ୍ରୀ ହିମାଂଶୁ ରଂଜନ ଦାଶ

ଆଇନା ।

ପିଲାଟିବେଳୁ ଦେଖି ଆସୁଥିବା ସେଇ ଆଇନାରେ କେତେ ପ୍ରତିଛବି ଆସେ । କେତେବେଳେ ଛନ ଛନ ଦିଶେଟି ମୁହଁଟ ପୁଣି କେତେବେଳେ 'ହାଉ ଆ, କୋରଡ଼ଗତ ଅବଶ୍ବାସର ଆଖି । ଏତେ ଭିନ୍ନତା ସତ୍ତ୍ବେ— ଆଇନା କିନ୍ତୁ ସବୁବେଳେ ଅନେଷ୍ଟ । ହିପୋକ୍ରିସିକୁ ସେ ପ୍ରଶ୍ରୟ ଦିଏନ— ତା' ସାମନାରେ ଯାହା ଅସେ– ତା'ର ନିଚ୍ଛକ ପ୍ରତିଛବି ପ୍ରତିଫଳନ କରିବା ତା'ର ଧର୍ମ । ଏବେ ଭାବିଲେ ହସ ଲଗୁଛି, କଏ କ'ଣ ଭାବୁଥିଲ ମୁଁ ଜାଣେନି, ମୋର କିନ୍ତୁ ମନେ ହେଉଥିଲ ଆଇନାରେ ଉଦ୍ଭାସିତ ହେଉଥିବା ମୋ' ମୁହଁ ସବୁଠୁ ସୁନ୍ଦର, ସବୁଠୁ ସରଳ ।

ଆଃ, ଏଇ ଆଇନା ଉପାଖ୍ୟାନର ଅବତାରଣାରେ ମୁଁ କ'ଣ ସତେ ବେଶି ଭାବପ୍ରବଣ ହୋଇ ପଡ଼ୁଛି କି ? ନିଚ୍ଛକ ସତ ପାଖରେ ମଣିଷ କ'ଣ କେତେବେଳେ ଭାବପ୍ରବଣ ହୋଇପାରେ ନାହିଁ ? ଏ ପ୍ରଶ୍ନ ମୋ' ମନରେ ପ୍ରଥମେ ଆସିଥିଲ ଯେଉଁଦିନ ଉଜଣୀ ବାହାଦର ସଂହାନ୍ତରେ ପୁରୀର ଏକ କାର୍ଡିଷ୍ଟୁଡରେ ମୁଁ ଯାଇ ପହଞ୍ଚିଥିଲି । ଡଃ ବୈଦ୍ୟନାଥ ମିଶ୍ର ଆନନ୍ଦରେ ସମ୍ଭାଷଣ ଜଣାଇଥିଲେ, ଅଥଚ ପାଖରେ ଆଇନା ନଥିଲ । ଆଇନା ଥିଲେ ମୁଁ ହୁଏତ ଭାବିଥାନ୍ତି—ପ୍ରତିବମ୍ବର ଚେତେହେବ ସତ୍ୟକୁ ସାମ୍ନା ସାମ୍ନି କଲାପରି ପ୍ରତିଶ୍ରୁତି ବହନ କରୁଛି ଅବା ନାହିଁ । ସେ କଥା ବର୍ତ୍ତମାନ ବିଗ୍ଭର କରିବାର ସମୟ ଆଉ ନାହିଁ । କାରଣ ଅଭୁତ ହେଲେ ବି ତାହା ବର୍ତ୍ତମାନ ଏକ ଇତିହାସ ।

ଜୀବନର ଅପରାହ୍ଣ ବ୍ୟସ୍ତାରେ ମୁଁ ଯେ କେତେବେଳେ ଯାଇନାହିଁ— ଏକଥା କହିଲେ ସତ୍ୟର ହୁଏତ ଅପଳାପ ହେବ । କିନ୍ତୁ ସ୍ବାଭାବିକ ଭାବେ କାର୍ଯ୍ୟରତ ମଣିଷ ପାଖରେ ମୃତ୍ୟୁ ହଠାତ୍ ଆସି କହିବ "ଜୀବନକୁ

ଏତେଦିନ ହେଲା ଚାହିଁ, ତୁ କ'ଣ ମୋ' କଥା ଭାବନ୍ତୁ ?" — ଏ କଥାର ନିଷ୍ଠୁର ବିଷର୍ଣ୍ଣତା କେଜାଣି କାହିଁକି ମୁଁ ସ୍ୱାଭାବିକ ଭାବେ ଗ୍ରହଣ କରି ପାରୁନାହିଁ ।

କେତେଦିନର ବା ଚିହ୍ନା ? କେତେଦିନ ବା ଆମେ ପରସ୍ପରକୁ ଜାଣିଥିଲୁ ? ଅଥଚ ତାଙ୍କ ଅବର୍ତ୍ତମାନରେ ଏ ଦୀର୍ଘଶ୍ୱାସ, ଏ ବିଷର୍ଣ୍ଣ ଉଦାସଭାବ କାହିଁକି ଓ କେମିତି ଆସୁଛି ମତେ ଯଦି ପ୍ରଶ୍ନ କରାଯାଏ — ତେବେ ମୁଁ ଜମା କହି ପାରିବିନି ।

ଖାଲି ଏ ଯାବତ ଭାବୁଛି, କୌଣସି ମୁହୂର୍ତ୍ତରେ—ମତେ ଯଦି କେତେବେଳେ ସୁଯୋଗ ଦିଆଯାଏ, ତେବେ ମୁଁ କହିବ, ଅନ୍ତୀପ୍ସିତାର ସୀମା କ'ଣ ଏତେ ସଂକ୍ଷିପ୍ତ ? ଏତେ ନିରାବରଣ ? ଆପଣଙ୍କ ପାଇଁ ଫୁଲଟିଏ ଦେବାପାଇଁ ମୋର କ'ଣ ଯୋଗ୍ୟତା ନାହିଁ ? ନା ଦେଲେ ଆପଣ ଅସ୍ୱୀକାର କରିବେ ?"

ଖାଲି ଏତିକି·····ଏତିକି ।

—o—

ସୁକନ୍ୟା, କଟକ

# କଟକୀଉଁ

## ଶ୍ରୀ ଅରବିନ୍ଦ ମିଶ୍ର

କି ଦେଇ ପୂଜିବୁ ତୁମ ଶ୍ରୀପୟର ଆଜି ଏହିଁ ଶ୍ରାଦ୍ଧ ଦିନେ
ଯେତିକି ଶିଖିଛୁ ସେତିକି ବାଢୁଛୁ ଘେନ ତାକୁ ସ୍ନେହ ଦାନେ । ୦
କି ଦେଇ ପୂଜିବୁ.........

ସ୍ୱଳ୍ପଦିନ ପାଇଁ ରହିଥିଲ ପାଶେ ପିତା ମାତା ଗୁରୁ ତୁମେ
ଶିଖାଉଥିଲ ତ ଅଜ୍ଞାନ-ତିମିର ନାଶିବାକୁ ଜ୍ଞାନ ଦୀପେ
ତୁମରି କରୁଣା ଆଶିଷରୁ ଏବେ ହତଶିରୀ ହେଲୁ ଆମେ । ୧
କି ଦେଇ ପୂଜିବୁ.........

ତୁମ କାଉଁରୀର ପରଶ ଲଭିଲେ ଫୁଟୁଥିଲୁ ପାରିଜାତ
ଅମୃତ ଜ୍ଞାନ ବିତରୁଥିଲ ତ ଭବେ ହୋଇ ଏକାଗ୍ରତ
କାହାପାଶେ ଯିବୁ ଅନାଥ ପରଏ ' ଚ୍ଲିଗଲ ପରେ ତୁମେ । ୨
କି ଦେଇ ପୂଜିବୁ ........

ସବୁର ଉପମା, ଅଳଙ୍କାର ତୁମେ ରଖିଗଲ ଆଦରଶ
ବର୍ଣ୍ଣିବାକୁ ନାହିଁ ଶିଖିବାକୁ ଅଛି ତୁମ ଯଶ ପଞ୍ଚରୁଷ
ଅନ୍ଧ ପଥଏ କେମିତି ଚ୍ଲିବୁ ତୁମ ଉପଦେଶ ବିନେ ?
କି ଦେଇ ପୂଜିବୁ.........

ଧନ୍ୟ ହୋଇଛି ଓଡ଼ିଶା, ତୁମକୁ ସନ୍ତାନ ରୂପରେ ପାଇ
ବନ୍ଧୁ ଭବ ପ୍ରୀତି ନିବିଡ କରିଛ ନିଜକୁ ହଜାଇ ଦେଇ
ଫେରିଗଲ ତୁମେ, ଝୁରୁଛି ଏ ମାଟି ଶୂନ୍ୟତାର ଦହନେ ! ୪
କି ଦେଇ ପୂଜିବୁ ........

କର୍ପୂର ଉଡ଼ିଲ, ଗନ୍ଧ ନେଇଗଲ, କନା ରହିଗଲ ଖାଲି
ଫେଡ଼ିବାକୁ ଦିନ ଦୁଃଖ ଅପ୍ରମିତ ଆଶିଷ ଦିଅ ହେ ଢାଳି
ପ୍ରଭୁ ନୀଳକଣ୍ଠ ହୁଅନ୍ତୁ ସହାୟ ତୁମ ବୈକୁଣ୍ଠ ଜୀବନେ । ୫
କି ଦେଇ ପୂଜିବୁ........

ବୀରନରସିଂହପୁର
ପୁରୀ





ପୁତ୍ରର ଶ୍ରୀମାନ ଶିତୀକଣ୍ଠଙ୍କର ବିବାହ ସମୟରେ

ଶ୍ରୀଯୁକ୍ତ ବ୍ରହ୍ମାଙ୍କ ସହ ଡଃ ମିଶ୍ର

# ବନ୍ଧୁ ସ୍ମରଣେ

ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ

"ନାଭିନନ୍ଦେତ୍ ମରଣମ

ନାଭିନନ୍ଦେତ୍ ଜୀବିତମ୍

କାଳମେବ ପ୍ରତୀକ୍ଷେତ୍

ନିର୍ଦ୍ଦେଶଂ ଭୃତ୍ୟୋକୋଯଥା" ।

ଭୃତ୍ୟ ଯେପରି ପ୍ରଭୁଙ୍କର ଆଦେଶ ପାଳନ କରିବା ପାଇଁ ଅପେକ୍ଷା କରି ରହିଥାଏ ସେହି ଭଳି କ୍ଷୟଶୀଳ ମନୁଷ୍ୟ ମରଣ ବା ଜୀବନ କୌଣସିଟିକୁ ଅଭିନନ୍ଦିତ ନକରି 'କାଳ'କୁ ହିଁ ଅପେକ୍ଷା କରି ରହିବା ଉଚିତ୍ । ମୋର ପ୍ରିୟ ବନ୍ଧୁ ଡଃ ବୈଦ୍ୟନାଥ ମିଶ୍ର ଚାଲି ଯିବାର ଆଜିକୁ ବର୍ଷେ ହୋଇଗଲେ ମଧ୍ୟ ତାର ଅନାବିଳ ବନ୍ଧୁତାର ସୁଗନ୍ଧ ଆଜି ବି ମୋର ଚେତନାକୁ ଆଚ୍ଛନ୍ନ କରି ରଖିଛି । ତାର କଥା କହିବାର ସେଇ ଦୃପ୍ତ ଭଙ୍ଗୀ, ଅନମନୀୟ ପ୍ରତିଭା ଏବଂ ତାର ଦୃଢ଼ ମନ ତଳେ ଛଳଛଳ କରୁଥିବା କୋମଳ ହୃଦୟର ବନ୍ଧୁତା ମୋତେ ତଥା ଅନ୍ୟ ବନ୍ଧୁମାନଙ୍କୁ ସର୍ବଦା ଅନୁପ୍ରାଣିତ କରୁଥିବ । ବନ୍ଧୁମାନଙ୍କ ପାଇଁ ତାର ସାହାଯ୍ୟର ହସ୍ତ ସର୍ବଦା ପ୍ରସାରିତ ଥିଲା । ସଂସାରର ଯେତେ ମୂଲ୍ୟବାନ ବସ୍ତୁ ହେଉ ବୈଦ୍ୟନାଥର ଆସକ୍ତି କୌଣସି ଜିନିଷ ପ୍ରତି ନଥିଲା । କର୍ତ୍ତବ୍ୟ ବାହାରେ ଆଉ ଗୋଟିଏ ପାଦ ଆଗକୁ ଯିବା ତାର ନୀତି ବିରୁଦ୍ଧ ଥିଲା । ଯାହା ସେ ଜୀବନରେ ହାସଲ କରିଥିଲା ସେଥିପାଇଁ ତାର ମେଧା, ତାର ପରିଶ୍ରମ ତଥା ତାର ନୀତି ହିଁ ଦାୟୀ ଥିଲା । କାହା ପାଇଁ ସେ ଜୀବନରେ ବଡ଼ ହୋଇନଥିଲା ।

ଏହି ପରିପ୍ରେକ୍ଷୀରେ ଗୋଟିଏ ଘଟଣା ମୋର ସବୁବେଳେ ମନେ ପଡ଼ିଯାଉଛି । ୧୯୮୯ ମସିହାରେ ହୋଇଥିବା ଡାକ୍ତରମାନଙ୍କ ଆନ୍ଦୋଳନ ବେଳର କଥା । ତାର କୌଣସି ସହକର୍ମୀ ବା ତାର ଉପରିସ୍ଥ କେହି ଲୋକ ତତ୍କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ତା ବିଷୟରେ ଧାରଣା ଦେଇଥିଲେ ଯେ ଯଦି ଡଃ ବୈଦ୍ୟନାଥ ମିଶ୍ର ଆନ୍ଦୋଳନରୁ ଓହରିଯିବେ ତେବେ ଡାକ୍ତରମାନଙ୍କ ଷ୍ଟ୍ରାଇକ୍ ବନ୍ଦ ହୋଇଯିବ । ସେଥିପାଇଁ ନିଜେ ସ୍ୱାସ୍ଥ୍ୟମନ୍ତ୍ରୀ ଫୋନ୍ ଯୋଗେ ତା ସାଙ୍ଗେ କଥାବାର୍ତ୍ତା କରି କହିଥିଲେ ଯେ ଆପଣ ଧର୍ମଘଟ୍‌ରୁ ଓହରି ଆସନ୍ତୁ ଏହା ମୋର ଅନୁରୋଧ । ଅନ୍ୟ କେହି ହୋଇ-ଥିଲେ ମନ୍ତ୍ରୀଙ୍କ ଅନୁରୋଧ ତଥା ଆଦେଶକୁ କେବେହେଲେ ଏଡେଇ ଦେଇ ପାରିନଥାନ୍ତେ । କିନ୍ତୁ ସେତ ଅନ୍ୟ ଉପାଦାନରେ ଗଢ଼ାଥିଲା । ତାର ମନ, ତାର ବିବେକ ଯେଉଁ କାମ କରିବାକୁ ତାକୁ ମନା କରୁଥିଲା ମନ୍ତ୍ରୀଙ୍କ କଥାରେ ସେ କଣ ରାଜି ହେବ । ତେଣୁ ନମ୍ର ଅଥଚ ଦୃଢ଼ କଣ୍ଠରେ ତାର ସେଇ ଉତ୍ତର ଥିଲା, ଓମସାର ମୁଁ କର୍ମକର୍ତ୍ତା ନୁହେଁ । ମୋର ଓହରିବା ନ ଓହରିବା ସାଙ୍ଗରେ ଧର୍ମଘଟ ଭାଙ୍ଗିବାର କିଛି କାରଣ ନାହିଁ । ମୁଁ ଏହି ସଂଗଠନର ଜଣେ ସାଧାରଣ ସଦସ୍ୟ । ଏତିକି କହି ସେ ଫୋନ୍ ଛାଡ଼ି ଦେଇଥିଲା । ମନ୍ତ୍ରୀଙ୍କୁ ନିଶ୍ଚିତ ବାଧିବା କଥା । ତା ପରେ ତାକୁ ଅନେକ ପ୍ରକାରର ଧମକର ସମ୍ମୁଖୀନ ହେବାକୁ ପଡ଼ିଥିଲା । ବଦଳିର ଭୟ, କେସର ଭୟ, ପ୍ରାଇଭେଟ୍ ପ୍ରାକଟିସ୍‌ର ଭୟ, ସସପେଣ୍ଡର ଭୟ । ଏମିତି ଅନେକ ଭୟ । କିନ୍ତୁ ହିମାଳୟ ପରି ଦୃଢ଼ ମନକୁ ତାର କୌଣସି ଭୟ ଛୁଇଁ ପାରିନଥିଲା । ତାର ଶୁଭେଚ୍ଛୁ ବନ୍ଧୁ କେତେ ଜଣ ତାକୁ ପରାମର୍ଶ ଦେଲେ ଯେ ଯାହା ହେବାର ହେଲାଣି, ତୁମେ ଥରେ ଯାଇ ମନ୍ତ୍ରୀଙ୍କୁ ଦେଖାକରି ଆସ । ତା ପରେ ସବୁ ଠିକ୍ ହୋଇଯିବ । ତାର ଦୃଢ଼ ଧାତବ କଣ୍ଠରେ ସେ ସେହି ବନ୍ଧୁମାନଙ୍କୁ ଜବାବ ଦେଇଥିଲେ, ମୁଁ କାହିଁକି ଯିବି ତାଙ୍କ ପାଖକୁ । ମୁଁ ତ କିଛି ଅନ୍ୟାୟ କାର୍ଯ୍ୟ କରିନାହିଁ । ମୋର ଚାକିରୀ ଯିବ ସିନା ଅନ୍ୟାୟ କାର୍ଯ୍ୟରେ ସହଯୋଗ କେବେ କରିବି ନାହିଁ । ମୁଁ ମାଟିରେ ସ୍ୱାଭିମାନ ଧରି ଜନ୍ମ ହୋଇନଥିଲି । କଷ୍ଟ ସହି ଏପର୍ଯ୍ୟନ୍ତ

ଆସିଥିବା ମଣିଷ ମୁଁ । ଗୃକିରୀ ଗୃଲିଗଲେ ବି ଦୁଇ ବେଳା ଖାଇବାକୁ ଭଗବାନ୍ ମୋତେ ସାହାଯ୍ୟ କରିବେ । ଆଉ ଯଦି ମୁଁ ନ୍ୟାୟରେ ରହିଥିବି ମନ୍ତ୍ରୀ ମହାଶୟ ଦିନେ ଯେତେବେଳେ କ୍ଷମତା ନଥିବ ସେତେ-ବେଳେ ମୋ ପାଖକୁ ସେ ଆସି ପାରନ୍ତି । ଆଉ ଆଶ୍ଚର୍ଯ୍ୟର କଥା, ଏହି କଥା କହିବାର ମାତ୍ର ୬ ମାସ ନପୁରୁଣୁ ଯେଉଁଦିନ ତାର ଅକାଳ ତଥା ଅପ୍ରତ୍ୟାଶିତ ବିୟୋଗ ଘଟିଲା କୌଣସି କାରଣ ବଶତଃ ମନ୍ତ୍ରୀ ପୁରୀ ଆସିଥାନ୍ତି । ଯେମିତି ଶୁଣିଲେ ଡଃ ବୈଦ୍ୟନାଥ ମିଶ୍ର ଗୃଲିଗଲେ, ତାର ଶେଷ ଦର୍ଶନ କରି ଶ୍ରଦ୍ଧାଞ୍ଜଳି ଜଣେଇବାକୁ ଆସି ତା ଘରେ ପହଞ୍ଚିଥିଲେ । ବିଧିର କି ଅପୂର୍ବ ସଂଯୋଗ । ତାର କହିଥିବା କଥା ଏମିତି ଭବରେ ସତ ହୋଇଥିଲା ।

ତାର ସ୍ୱଳ୍ପ ସମୟର ଜୀବନ ଅନ୍ୟର ସେବାରେ ବ୍ୟୟ ହୋଇ-ଥିବାରୁ ସେଇ ପୁଣ୍ୟ ବଳରେ ଜନ୍ମ ମୃତ୍ୟୁର ଚକ୍ରରୁ ସେ ହୁଏତ ମୁକ୍ତି ପାଇ ସାରିବଣି । କିନ୍ତୁ ତାର ଯଶୋଦେହ ଚିର ଆୟୁଷ୍ମାନ୍, ଚିର ଅବିନାଶୀ । କାଳ ତାହାକୁ କ୍ଷୟ କରିପାରିବନି । ଶୋକର ଯନ୍ତ୍ରଣା, ବିୟୋଗର କ୍ଷତ କିଭଳି ଦାରୁଣ ତାର ଅନୁଭବ ମୋର ଅବସର ମୁହୂର୍ତ୍ତର ଅନୁଭବ । ଶେଷରେ ତାର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛି ।

* ଦଉତୋଟା, ପୁରୀ



# ବୈଦ୍ୟନାଥ ସ୍ମରଣେ

## ବିଜୟ ଦାସ

କାଲି ପରି ଲାଗୁଛି । ସଂସାରର ଜଞ୍ଜାଳ ଭିତରେ ବର୍ଷଟିଏ ଗୁଏଁ ଗୁଏଁ ଚାଲିଗଲାଣି । ଛାତ୍ର ଜୀବନର ବନ୍ଧୁ ବଇଦା, ଦୂରବର୍ତ୍ତୀ ସମସ୍ତର ଡାକ୍ତର ବୈଦ୍ୟନାଥ ମିଶ୍ର କେତେ ସ୍ମୃତି. କେତେ କେତେ ଦିନ ରାତିର ଅକଳନ ଅଭିଜ୍ଞତା ବନ୍ଧୁତ୍ୱର ସାନ୍ନିଧ୍ୟ ଆଜି ସ୍ୱପ୍ନ. ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକୀ । ତାଙ୍କ ପରି ଜଣେ ବାଲ୍ୟ ବନ୍ଧୁଙ୍କର ଅକାଳ ବିୟୋଗ ସେ ଦିନ ଆମମାନଙ୍କୁ ସ୍ତବ୍ଧ କରି ଦେଇଥିଲା । ଈଶ୍ୱରଙ୍କର ଯେ ନିଷ୍ଠୁର ନିଷ୍ପତ୍ତିକୁ ଆମେ ସକୁ ବିଶ୍ୱାସ କରି ପାରୁ ନଥିଲୁ । କିନ୍ତୁ ତାହାହିଁ ଥିଲା ସତ୍ୟ । ଜଣେ କର୍ତ୍ତବ୍ୟ ନିଷ୍ଠ ସୈନିକ ଭାବେ ଚିର ନିଦ୍ରାରେ ଶୋଇଥିଲେ କର୍ମବୀର ବୈଦ୍ୟନାଥ । ସେ ଦୁଃଖ ପ୍ରକାଶ କରି ହେବ ନାହିଁ । କେବଳ ଅନୁଭବ ହିଁ ବୁଝି ପାରିବ ସେ କଷ୍ଟ । ଜୀବନ ଥିଲେ ମୃତ୍ୟୁ ହିଁ ସତ୍ୟ । ସବୁ ଜାଣି ବି ମନ ବୁଝେନା । ବୈଦ୍ୟନାଥଙ୍କ ସାନ୍ନିଧ୍ୟର ଅସଂଖ୍ୟ ସ୍ମୃତି ମନକୁ ଅସ୍ଥିର କରି ପକାଉଛି ।

ସେ ଦିନ ବୈଦ୍ୟନାଥ ଥାଆନ୍ତି । ଏଇ ପୁରୀ ଡାକ୍ତରଖାନାର ସ୍ତ୍ରୀ ରୋଗ ବିଶେଷଜ୍ଞ ଡାକ୍ତର । କଚେରୀରେ ମୁଁ ବ୍ୟସ୍ତତା ଭିତରେ କର୍ମରତ ଥାଏ । ଆମ ଗାଁର ବଇଁଶୀ ବିଶ୍ୱାଳ, ଆମର ଚାଷୀ, ଅତି ପ୍ରିୟ ମୋ ପାଖକୁ ଚାଲି ଆସିଲା । ମୁଣ୍ଡ ବାଡ଼େଇ କାନ୍ଦୁଥାଏ । ତାର ସ୍ତ୍ରୀ ପ୍ରସବ ଜନିତ ଯନ୍ତ୍ରଣାରେ ମୃତ ପ୍ରାୟ ବ୍ରହ୍ମଗିରି ଡାକ୍ତରଖାନାରୁ ଫରଓ୍ୱାଡ଼ ହୋଇ ପୁରୀ ଆସିଥାଏ । ବଇଁଶୀ ସ୍ତ୍ରୀକୁ ଡାକ୍ତରଖାନାରେ ଭର୍ତ୍ତି କରି ନେଇ ମୋ ପାଖକୁ ଦଉଡ଼ି ଆସିଥାଏ, ମୋ ଦ୍ୱାରା ବୈଦ୍ୟନାଥଙ୍କୁ ସୁପାରିଶ କରିବା ପାଇଁ । ସବୁ କାମ ଛାଡି ଦଉଡିଲି

ବୈଦ୍ୟନାଥଙ୍କ ଘରକୁ ତାଙ୍କୁ କହିବା ପାଇଁ । ସେ ଡାକ୍ତରଖାନାରୁ ଆସି ନଥିଲେ । ସଙ୍ଗେ ସଙ୍ଗେ ଆସି ଦେଖିଲେ ସବୁ କହିଲି । ଖାଇନଥିଲେ ଆଶ୍ଚର୍ଯ୍ୟ ହେଲି ସେ ରୋଗୀକୁ ଅପରେସନ କରିସାରିଥିଲେ । ରୋଗୀ ଉପରୁ ବିପଦ କଟିଯାଇଥିଲା । ବଇଁଶୀ ମୋ ପାଖରେ ଥିଲା । ଡାକ୍ତର-ଖାନାରେ ରୋଗୀ ପାଖରେ କେହିନଥିଲେ । କିନ୍ତୁ ଥିଲେ ରୋଗୀର ପିତା, ମାତା, ସବୁକିଛି ଭାବେ ଡକ୍ଟର ବୈଦ୍ୟନାଥ । ବଇଁଶୀ ଆଖିରୁ କୃତଜ୍ଞତାର ଲୁହ ଝରୁଥିଲା । ମୋ ଦ୍ୱାରା ଆଉ କିଛି ଆବଶ୍ୟକତା ଆଉ ନଥିଲା । ଜଣେ କର୍ମନିଷ୍ଠ ଡାକ୍ତରଙ୍କର କର୍ତ୍ତବ୍ୟ ପରାୟଣତାକୁ ମୁଁ ଉପଲବ୍ଧି କରୁଥିଲି । ଭାବୁଥିଲି କିଛି ତ ପରିବର୍ତ୍ତନ ହୋଇନାହିଁ ବୈଦ୍ୟନାଥଙ୍କର ? କର୍ତ୍ତବ୍ୟରେ ତାଙ୍କର ଦୃଢ଼ତା ପୂର୍ବପରି ଅତୁଟ ଥିଲା ।

ବୈଦ୍ୟନାଥ ଆଜି ନାହାନ୍ତି । ଆମେ ସବୁ ବନ୍ଧୁବର୍ଗ ବୈଦ୍ୟନାଥ ମୈତ୍ରୀ ସଂସଦ ଗଢ଼ିଛୁ ଆମମାନଙ୍କର ମନ ବୁଝିବା ପାଇଁ—ବନ୍ଧୁଭାବେ ତାଙ୍କ ପ୍ରତି କିଛିଟା କର୍ତ୍ତବ୍ୟ କରିବା ପାଇଁ । କିନ୍ତୁ ଏ ଚିନ୍ତାଧାରା ତ ତାଙ୍କର ସୃଷ୍ଟି । ସେ ଗଢ଼ିଥିଲେ ଆମେ ସବୁ ବନ୍ଧୁ ଏକାଠି ବସିବା, ପରସ୍ପରର ସୁଖ, ଦୁଃଖ ବାଣ୍ଟିନେବା । ସଂସାରର କର୍ମମୟ ଜଞ୍ଜାଳ ଭିତରୁ ସମୟ କାଢ଼ି ଆଜି ଆମେ ସବୁ ଏକାଠି ଆମେ ହୋଇଛୁ, ବନ୍ଧୁ ବୈଦ୍ୟନାଥଙ୍କ ପାଇଁ ତା ଧର୍ମପତ୍ନୀ ଓ ପିଲାମାନଙ୍କୁ ଅଜସ୍ର ଆଶୀର୍ବାଦ ଦେଉଛୁ । ବନ୍ଧୁ ବୈଦ୍ୟନାଥଙ୍କ ଅପୂର୍ଣ୍ଣ କାର୍ଯ୍ୟ ତାଙ୍କରି ପିଲାମାନଙ୍କ ଅମୃତ ସ୍ପର୍ଶରେ ସଫଳ ହେଉ ଏହାହିଁ କାମନା ।

* ଆଡ଼ଭୋକେଟ୍
ପୁରୀ



# ବନ୍ଧୁ ପରି ବନ୍ଧୁ

## ଇଂ ଚିତ୍ତରଞ୍ଜନ କର

ବନ୍ଧୁ ବୈଦ୍ୟନାଥଙ୍କର ବିୟୋଗ ସମ୍ବାଦ ଶୁଣି ମୁଁ କଥାଟିକୁ ପ୍ରଥମେ ବିଶ୍ୱାସ କରିପାରିଲି ନାହିଁ କିନ୍ତୁ ତାହା ହିଁ ଥିଲା ସତ୍ୟ । "ଉତ୍ତମ ଲୋକମାନେ ଅଧିକ ଦିନ ବଞ୍ଚିପାରନ୍ତି ନାହିଁ ।" ପ୍ରବାଦର ସତ୍ୟତା ପୁଣି ଥରେ ପ୍ରମାଣିତ ହୋଇଗଲା । ବୈଦ୍ୟନାଥ (ବାବୁଜୀ) ସହିତ ମୋର ଘନିଷ୍ଠତା ଥିଲା । ଦେଖା ସାକ୍ଷାତ ହେଲେ ଆମ୍ଭେମାନେ ଗଳ୍ପରେ ମଜ୍ଜି ଯାଉଥିଲୁ । ଯଦିଓ ତାଙ୍କର ପ୍ରଫେସନ ଥିଲା ଡାକ୍ତରୀ ଓ ମୋର ଇଞ୍ଜିନିୟରିଂ । କିନ୍ତୁ ଆମ୍ଭେମାନେ ପରସ୍ପର ସହିତ ବିଭିନ୍ନ ବିଷୟ ଉପରେ ଆଲୋଚନା କରୁଥିଲୁ ।

ବାବୁଜୀ ବିୟୋଗର ୧୫।୨୦ଦିନ ମୁଁ ସସ୍ତ୍ରୀକ ଜୟପୁରରୁ(କୋରାପୁଟ) ପୁରୀ ଯାଇଥାଏ । ଶିତୁର (ପ୍ରଫେସର ଶିତିକଣ୍ଠ ମିଶ୍ର) ଗୋଡ ଭାଙ୍ଗିଥିବାରୁ ସେ ଚଳତ୍-ଶକ୍ତି ହୀନ ଅବସ୍ଥାରେ ବାବୁଜୀର ଘରେ ଚିକିତ୍ସାଧୀନ ଥାଏ । ସନ୍ଧ୍ୟା ସମୟ, ବାବୁଜୀ ମତେ ଥଟ୍ଟାକରି ଦୁଇପଦ କହିଲେ । ମୁଁ ତାଙ୍କ ଚେୟାର ନିକଟକୁ ଉଠିଯାଇ କହିଲି– "ସେମିତି କହିଲେ ତମ ସହ ଆଉ ଦେଖା ହେବନି ।" ତେଣୁ ମୁଁ ଯେତେବେଳେ ତାଙ୍କ ମୃତ୍ୟୁ ସମ୍ବାଦ ପ୍ରାୟ ୨୦ ଦିନ ପରେ ଟେଲିଭିଜନରେ ଶୁଣିଲି, ହତୋତ୍ସାହ ଅବସ୍ଥାରେ ରହିଗଲି । ବିଶ୍ୱାସ କରିପାରିଲି ନାହିଁ । ସତେ କଣ ମୋ କହିଥିବା କଥା ସତ ହେଲା ! ମୁଁ ଅତିଶୟ ମର୍ମାହତ ହୋଇଗଲି ।

ମୋ ଜାଣିବାରେ ବାବୁଜୀ କର୍ତ୍ତବ୍ୟପରାୟଣ, ଅତ୍ୟନ୍ତ ସଚ୍ଚୋଟ ଓ ସତ୍ୟଭାଷୀ, ପରୋପକାରୀ, ବନ୍ଧୁବତ୍ସଳ, ଗରୀବ ଲୋକଙ୍କର ସହାୟ,

ବନ୍ଧୁବିଳାସୀ ଓ ହାସ୍ୟପ୍ରିୟ ଥିଲେ । ଡାକ୍ତର ହିସାବରେ ସେ ଖୁବ୍ ଭଲ ନାଁ କରିଥିଲେ । ଆଉଥରକ କଥା— ଦେବନା ଓ ବାବୁଜୀର ବ୍ରତଘର ସମୟରେ ମୁଁ ପିଲମାନଙ୍କ ସହିତ ବାବୁଜୀଙ୍କ ଗ୍ରାମ ବୀରନରସିଂହପୁର ଯାଇଥାଏ । ଏହା ବୋଧହୁଏ ୧୭।୧୮ ବର୍ଷ ତଳର କଥା । ସେତେବେଳେ ଖଘଦିନ ଘର୍ଭ୍ରିଯାପନ ନିମନ୍ତେ ଆମେ ଗ୍ରାମରେ ରହିଲୁ । ବନ୍ଧୁବାନ୍ଧବମାନଙ୍କର ବହୁତ ଚହଳି ଥାଏ । ରାତ୍ରିରେ ପ୍ରବଳ ଗରମ ସାଙ୍ଗକୁ ପ୍ରବଳ ମଶା । କିପରି ରାତିଟି କଟିବ ଏହା ଭାବୁଥାଏ । ପରେ ତାଙ୍କର ଉଚ୍ଚ ବାରଣ୍ଡାରେ ଟିକିଏ ପବନ ଲାଗିବ ଭାବି ଗୋଟିଏ ସପ ପକାଇ ରାତି ପ୍ରାୟ ଗୋଟାଏ ବେଳକୁ ଟିକିଏ ଗଡ଼ିପଡ଼ିଲି । କିନ୍ତୁ ମଶାମାନଙ୍କର ଉତ୍ପାତରେ ଛାଟିପିଟି ହେଉଥାଏ । କିଛି ସମୟ ପରେ ଆଖିକୁ ଛାଇନିଦ ମାଡ଼ିଆସୁଛି । ମୁଁ ଅନୁଭବ କଲି ମତେ କିଏ ଜଣେ ଚଦରଟିଏ ଘୋଡ଼େଇ ଦେଉଛି । ହଠାତ୍ ଆଖି ଖୋଲି ଦେଖିଲି ସେ ହେଉଛନ୍ତି ମୋର ବନ୍ଧୁ ଡାକ୍ତର ବୈଦ୍ୟନାଥ ମିଶ୍ର । ଆମକୁ କଷ୍ଟ ନହେଉ ବୋଲି ଆଗରୁ ନିକଟବର୍ତ୍ତୀ ଚନ୍ଦନବଜାରରୁ ଯେତିକି ମିଳିଲା ସେତିକି ମଶାଧୂପର ବ୍ୟବସ୍ଥା କରିଥିଲେ । କିନ୍ତୁ ତାହା ସମୁଦ୍ରକୁ ଶଙ୍ଖେପଣା । ତାହା ଅଳ୍ପସମୟ ପରେ ସରିଯାଇଥିଲା । ତେଣୁ ସେ ଆଉ କିଛି ନପାଇ ନିଜ ଚଦରଟି ମୋ ଉପରେ ଘୋଡ଼ାଇ ଦେଇଥିଲେ ଓ ମୁଁ ଆରାମରେ ଶୋଇ ଯାଇଥିଲି । ଏହା ଅତି ମାମୁଲି ଘଟଣା ହୋଇଥିଲେ ବି ତାଙ୍କର ବନ୍ଧୁବତ୍ସଳତା ଓ ସାହାଯ୍ୟକାରୀ ମନୋଭାବର ପରିଚୟ ମିଳେ । ତାଙ୍କ ବିୟୋଗରେ ବନ୍ଧୁପରି ଜଣେ ବନ୍ଧୁକୁ ହରାଇଛି । ତାଙ୍କର ବିୟୋଗରେ ଗଭୀର ଶୋକପ୍ରକାଶ କରୁଛି ଏବଂ ତାଙ୍କର ଅମର ଆତ୍ମାର ସଦ୍‌ଗତି ନିମନ୍ତେ ଏହି ପ୍ରଥମ ସାମ୍ବତ୍ସରିକ ଶ୍ରାଦ୍ଧ ଦିବସରେ ପ୍ରାର୍ଥନା କରୁଛି ।

ନିର୍ବାହୀ ଯନ୍ତ୍ରୀ
ଜୟପୁର



# ସ୍ମୃତିର ସହରରେ

## ସରଯୂ ରଥ (ବୁନ୍ଟା)

ନନ୍ଦପୁରେ ଆଜି ଚହଲ ପଡ଼ିଛି
କାହ୍ନା ଗଲା ବୋଲି ତେଜି
ରାଧା ବାହୁନୁଛି ଯଶୋଦା ଝୁରୁଛି
ମୁରଲୀର ସ୍ୱନ ଖୋଜି । ୧ ।

କେମିତି ବାହୁଡ଼ି ଗଲ ସଞ୍ଜବେଳେ
କର୍ମ ଭୂମି ଶୂନ୍ୟ କରି
କାମନା ଆଞ୍ଜୁଳି ଭରିନି ତ ତୁମ
ଆଜି ବି ରହିଛି ଖାଲି । ୨ ।

ସର୍ବ ପରିଜନ ଖୋଜୁଛନ୍ତି ଆଜି
ତୁମ ସେବାର ସାହାର
ଅନୁପମ ତୁମ ଆଦର୍ଶ ବ୍ୟକ୍ତିତ୍ୱ
ଅମିୟ ଆଶାର ଧାର । ୩ ।

ତୁମରି ମନ୍ଦିର ଶୁନଶାନ ଆଜି
ଶୁଭୁନି ତ ଶଙ୍ଖ ଧ୍ୱନି
ପାଠଶାଳା ତୁମ ବାହୁନି ବଖାଣେ
ଅତୀତ ସ୍ମୃତି କାହାଣୀ । ୪ ।

ଶୋଇଗଲ ଯେବେ ପ୍ରଶାନ୍ତ ମୁଦ୍ରାରେ
ଅମଳିନ ଫୁଲ ଶେଯେ
ଭୁଲିଲ କେମିତି ବନ୍ଧୁ ସହୋଦର
ଶ୍ରାବଣ ପରଶେ ଭିଜେ । ୫ ।

କିଏ ଜାଣିଥିଲା   ଅଦିନ ବଉଦ
ଧୋଇଦେବ ଧରଣୀରେ
କଳାକାର ଆତ୍ମା   ଲୁଚିଯିବ ଶୁଭ୍ର
ଆକାଶର ଅଙ୍ଗନରେ   । ୬ ।

ଲିଭି ନାହିଁ ପଂକ୍ତି   ଶୁଖିନି ଲେଖନୀ
ବିପ୍ଳବୀ କବିତା ମାନ
କରୁଛନ୍ତି ଅବା   ଦରଦୀ ତୁମର
ଅମୃତ ଯଶଗାନ   । ୭ ।

ଶାନ୍ତସ୍ୱର ତୁମ   ଗୁମୁରି ଉଠୁଛି
ସେପାରିରୁ ରହି ରହି
ଡାକୁଅଛି କିହେ   ଶୁଭଙ୍କର ଦୃଷ୍ଟି
ନିଃସ୍ୱ ଆମରି ପାଇଁ !   । ୮ ।

ଆହେ କର୍ମବୀର   ତୁମ ଚରଣରେ
ଏତିକି ବିନମ୍ର ଅଳି
ଆଶିଷର ହାତ   ବଢ଼ାଇ ଆମର
ଭରିଦିଅ ଭିକ୍ଷାଞ୍ଜୁଳି   । ୯ ।

ସାଧକ ତୁମକୁ   ଏ ଶ୍ରାଦ୍ଧ ତିଥିରେ
ଜାଳି ସହସ୍ର ଦୀପାଳୀ
ବାଢୁଅଛୁ ଆମେ   'ସ୍ମରଣିକା' ଅର୍ଘ୍ୟ
ମମତାର ଶ୍ରଦ୍ଧାଞ୍ଜଳି   । ୧୦ ।

* ପୁଣେ



# ଡକ୍ଟ୍ରର ଆନ୍ ଡଃ ବୈଦ୍ୟନାଥ ମିଶ୍ର

**ଶ୍ରୀ ପୂର୍ଣ୍ଣଚନ୍ଦ୍ର ସିଂ**

ସ୍ୱର୍ଗତଃ ଡାକ୍ତର ବୈଦ୍ୟନାଥ ମିଶ୍ରଙ୍କ ଘର ପୁରୀଜିଲ୍ଲା ବୀର ନରସିଂହପୁର ଗ୍ରାମରେ ଅଟେ । ତାଙ୍କ କକେଇ ସ୍ୱର୍ଗତଃ ଗଦାଧର ମିଶ୍ରଙ୍କର ଘର ଆମ ଘର ପଡ଼ିଶା । ବୈଦ୍ୟନାଥ ବାବୁ କଲେଜରେ ପଢୁଥିବା ସମୟରେ ବେଳେ ବେଳେ ତାଙ୍କ କକେଇଙ୍କ ଘରକୁ ଆସୁଥିଲେ । ଏଣୁ ତାଙ୍କ ସହିତ ମୋର ପରିଚୟ ପ୍ରାୟ ୧୯୫୫ ମସିହାରୁ । ଅଧ୍ୟୟନ ଅବସ୍ଥାରୁ ମୁଁ ତାଙ୍କୁ ଦେଖିଆସିଛି । ସେ ଜଣେ ମେଧାବୀ ଓ ସ୍ପଷ୍ଟବାଦୀ ଛାତ୍ର ଥିଲେ । ଅଧ୍ୟୟନ ପରେ ସେ ଡ଼ାକ୍ତରୀ ଚାକିରୀରେ ଯୋଗଦାନ କରିଥିଲେ । ଡାକ୍ତରୀ ଚାକିରୀ କାଳରେ ସେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ସ୍ତ୍ରୀ ରୋଗ ବିଶେଷଜ୍ଞ ଭାବରେ ରହି ଆସିଥିଲେ ଏବଂ ଯେଉଁ ସ୍ଥାନରେ ସେ ରହିଥିଲେ ସେଠାରେ ସେ ଜଣେ କାର୍ଯ୍ୟଦକ୍ଷ, ସ୍ପଷ୍ଟବାଦୀ ଓ ମିଷ୍ଟଭାଷୀ ଡାକ୍ତର ଭାବରେ ସୁନାମ ଅର୍ଜନ କରିଥିଲେ । ପୁରୀରେ ସେ ଅନେକ ବର୍ଷ ଧରି ସ୍ତ୍ରୀରୋଗ ବିଶେଷଜ୍ଞ ଭାବରେ ରହିଥିଲେ ଓ ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ସେ ପୁରୀ ବଡ ଡାକ୍ତରଖାନାରେ ସ୍ତ୍ରୀରୋଗ ବିଶେଷଜ୍ଞ ଭାବେ ଥିଲେ । ତାଙ୍କର ସାଧୁତା ଓ କାର୍ଯ୍ୟଦକ୍ଷତା ପାଇଁ ସେ ଓଡ଼ିଶା ମେଡ଼ିକାଲ ଆସୋସିଏସନର ସମ୍ପାଦକ ଓ ଉପସଭାପତି ପଦବୀ ଦୀର୍ଘଦିନ ଧରି ମଣ୍ଡନ କରିପାରିଥିଲେ । ପୁରୀ ରୋଟାରୀ କ୍ଲବର ସେ ଜଣେ ସକ୍ରିୟ ସଦସ୍ୟ ଓ କର୍ମକର୍ତ୍ତା ଥିଲେ । ରୋଟାରୀ କ୍ଲବ ଆନୁକୂଲ୍ୟରେ ସେ ରୋଗୀ ଚିକିତ୍ସା ସହ ଅସହାୟମାନଙ୍କ ପାଇଁ ଅନେକ କାର୍ଯ୍ୟ କରିଯାଇଛନ୍ତି ।

ସ୍ୱର୍ଗତଃ ମିଶ୍ରଙ୍କର ଅକାଳ ବିୟୋଗରେ ସ୍ୱାସ୍ଥ୍ୟବିଭାଗ ତଥା ସର୍ବସାଧାରଣ ଲୋକେ ଜଣେ ଦକ୍ଷ ଓ ଦରଦୀ ହୃଦୟ ଡାକ୍ତରଙ୍କୁ ହରାଇ ବସିଲେ ଯାହାକି ଅପୂରଣୀୟ ଅଟେ ।

ଡ଼ାକ୍ତର ମିଶ୍ରଙ୍କର ପରୋପକାରୀ ମନୋଭାବ, ସାଧୁତା ସ୍ପଷ୍ଟବାଦୀତା ସର୍ବୋପରି କର୍ତ୍ତବ୍ୟନିଷ୍ଠ ସାଧାରଣ ଲୋକଙ୍କର ଚିରସ୍ମରଣୀୟ ହୋଇ ରହିବ । ଏହା ହିଁ ତାଙ୍କର ଭବିଷ୍ୟତ ବଂଶଧରଙ୍କ ଧ୍ୟେୟ ହେଉ, ଏହା ହିଁ ଆମର କାମନା ।

ଖାକିମଠ, ନୂଆସାହି
ପୁରୀଟାଉନ୍, ପୁରୀ



# ପିତୃବ୍ୟ ସ୍ମରଣେ

ଅଧ୍ୟାପକ - ଗିରିଜା ଶଙ୍କର ମହାପାତ୍ର

ହିମାଳୟର ବହୁ ଦୂରରେ ଥିବା ଲୋକଟି ହିମାଳୟର ପାଦରୁ ଶିଖର ପର୍ଯ୍ୟନ୍ତ କେତେ ସହଜରେ ଦେଖିପାରେ । ଅଥଚ ହିମାଳୟରେ ପାଦଥାପିଥିବା ଲୋକଟିର ଆଖି କୁଆଡ଼କୁ ପାଏନି । ଯେଉଁଆଡ଼େ ଦେଖେ, ଦଶଦିଗରେ କେବଳ ହିମାଳୟର ଅସୀମତା, ବିଶାଳତାକୁ ହିଁ ସେ ଅନୁଭବ କରେ ସେ ଯେ ଅତି ନଗଣ୍ୟ କ୍ଷୁଦ୍ର ମଣିଷଟିଏ ତାହା ହିଁ ତା'ପାଇଁ ହିମାଳୟର ଅନୁଭବ ।

ମୋ ପାଇଁ ବି ଧନ କକେଇଙ୍କର ଅନୁଭୂତି ଥିଲା ଠିକ୍ ସେଇଆ । ଧନୁ କକେଇ ମୋ' ନନାଙ୍କର ନିଜ ପିଇସୀ ପୁଅ ଭାଇ । ପୁତୁରା ହିସାବରେ ମୁଁ ତାଙ୍କୁ ପାଖରୁ ଦେଖିଛି । ତଥାପି ତାଙ୍କୁ କଳନା କରିବାର କଳ୍ପନା ମୁଁ କେବେ କରିପାରିନି । ତାଙ୍କୁ ଜାଣି ପାରିବାର ଅସାଧାରଣ ସାମର୍ଥ୍ୟ ମୋର ଅଛି ବୋଲି ଭାବିବାର ଧୃଷ୍ଟତା ମୁଁ କେବେ କରିପାରିନି । ଶରୀରକୁ ଦେଖିଲେ ପତଳା ହୋଇ କେଡ଼େ ଦୁର୍ବଳ ସ୍ୱାସ୍ଥ୍ୟର ମଣିଷଟିଏ ପରି ଲାଗନ୍ତି । ଅଥଚ ପାଖକୁ ଚାଲିଗଲେ, ସାମନାରେ ଠିଆ ହୋଇଗଲେ ନିଜକୁ କାହିଁକି କେଜାଣି ବଡ ଅସହାୟ ଲାଗେ, ଦୁର୍ବଳ ଲାଗେ ନିଜକୁ । ତାଙ୍କ ଆଖିକୁ ଆଖି ମିଳାଇ ଚାହିଁବାର ସାହସ ହଜିଯାଏ; ମୁହଁକୁ ମୁହଁ ଚାହିଁ କଥା କହିବାକୁ ଜିଭ ଶୁଖିଯାଏ । ଅଥଚ ମୁଁ ତାଙ୍କଠାରୁ ସ୍ନେହ ଓ ଆଦର ଛଡା ଆଉ କିଛି ପାଇନି । ଆପେ ଯାଇ ପାଖରେ ବସିପଡ଼ି କଥା ହେବାର ସାହସ କେବେ ବି ହୋଇନି । କିନ୍ତୁ ସେ ପାଖରେ ଡାକି ବସାଇ ଦୁଃଖ ସୁଖ ହେଲାବେଳେ ମନ ଆଉ କିଛି ଖୋଜିନି । ତାଙ୍କ ପରି ନିର୍ଭୀକ

ସ୍ପଷ୍ଟବାଦୀ ମୁଁ ଆଉ କାହାକୁ ଦେଖିନି । ଅଥଚ ଗୁରୁଜନମାନଙ୍କୁ ଅସମ୍ମାନ କରିବା ଅଥବା ଗୁରୁଜନମାନଙ୍କ କଥା ଉପରେ କଥା କହିବା ମୁଁ କେବେ ବି ଶୁଣିନି ।

ତାଙ୍କ ଡ଼ାକନାଆଁ 'ଧନୁ' କାହିଁକି ଦିଆ ହୋଇଥିଲା ମୁଁ ଠିକ୍ ଜାଣିନାହିଁ । ତେବେ ଏତିକି ଜାଣିଛି ଧନ ପରି ହିଁ ତାଙ୍କର ଗୁଣ ଥିଲା । ଧନୁରେ ପ୍ରତ୍ୟଞ୍ଚାକୁ ଟାଣି ଯେତିକି ଜୋର୍‌ରେ ବଙ୍କେଇବ, ସେତିକି ଜୋର୍‌ରେ ସେ ଶତ୍ରୁକୁ ଶରଦ୍ୱାରା ବିଦ୍ଧକରିବ ଓ ପୁଣି ସିଧା ହୋଇଯିବ । ଠିକ୍ ସେମିତି ପ୍ରତିକୂଳ ପରିସ୍ଥିତି ତାଙ୍କ ସମ୍ମୁଖରେ ଯେତେ ସାଂଘାତିକ୍ ଭାବରେ ଆସି ଉପସ୍ଥିତ ହୋଇଛି, ସେତିକି ଦୃଢ଼ତାର ସହ ସେ ତା'ର ମୁକାବିଲା କରି ସଫଳ ହୋଇଛନ୍ତି, ମାତ୍ର ଦବି ଯାଇ ନାହାନ୍ତି ।

ଆମ ଗାଆଁର ସେ ତାଙ୍କ ସମୟର ଶ୍ରେଷ୍ଠ ଛାତ୍ର ଥିଲେ । ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ପୁରୀ ଜିଲ୍ଲା ସ୍ତରରେ ସେ ସର୍ବାଧିକ ନମ୍ବର ରଖି ପ୍ରଥମ ହୋଇଥିଲେ । ଡାକ୍ତର ଭାବରେ ସେବାକୁ ସେ ନିଜ ଜୀବନର ବ୍ରତ କରି ନେଇଥିଲେ, ପ୍ରଶାସନିକ କ୍ଷମତାର ମୋହ ପାଇଁ ଆକୃଷ୍ଟ ହୋଇ ନ ଥିଲେ । ପୁରୀରେ ସେ ସ୍ତ୍ରୀ ଓ ପ୍ରସୂତିରୋଗ ବିଶେଷଜ୍ଞ ଥିବାବେଳେ ମୁଁ ନିଜେ ଦେଖିଛି । ଲୋକମାନଙ୍କର ତାଙ୍କ ଉପରେ କି ଅତୁଟ ବିଶ୍ୱାସ ଥିଲା । ସେ ଯଦି କୌଣସି ରୋଗୀର ଚିକିତ୍ସାଭାର ହାତକୁ ନେଇ ଯାଉଥିଲେ ତାର ପର ମୁହୂର୍ତ୍ତରୁ ହିଁ ସେ ରୋଗୀ ଓ ତା'ର ପରିବାର ମାନସିକ ଦୃଷ୍ଟିରୁ ଆପେ ଆପେ ସଂପୂର୍ଣ୍ଣ ସୁସ୍ଥତା ଅନୁଭବ କରୁଥିଲେ । କୌଣସି ରୋଗୀ ତାଙ୍କଠାରୁ ନିରାଶ ହୋଇ ଫେରିଥିବାର ମୁଁ ଶୁଣିନି କିମ୍ବା କେହି ଭଲ ନ ହୋଇ ଫେରି ଯାଇଥିବାର ମୁଁ ଜାଣିନାହିଁ ।

ଜଣେ ଡାକ୍ତର ହିସାବରେ ଏତ ତାଙ୍କର ସ୍ୱାଭାବିକ୍ ଗୁଣ ଥିଲା । ମାତ୍ର, ତାଙ୍କୁ ମୁଁ ଭୟ କରିବାର ପ୍ରଥମ କାରଣ ଏବେ ବି ମୋର ମନେ ପଡ଼େ । ସେତେବେଳକୁ ମୁଁ ରେଭେନ୍‌ସା ମହାବିଦ୍ୟାଳୟରେ ପଢ଼ୁଥାଏ । କଳିଙ୍ଗ–ଭାରତୀ ଅନୁଷ୍ଠାନ ତରଫରୁ ଆୟୋଜିତ ସପ୍ତାହବ୍ୟାପୀ ଭଞ୍ଜ-

ଜୟନ୍ତୀରେ ତା ପୂର୍ବରୁ ମୁଁ ପ୍ରାୟ ୮ ବର୍ଷକାଳ ଭାଷଣ ଦେଇ ସାରିଥାଏ । ଶୀତଳ ଷଷ୍ଠୀ ପୂର୍ବରୁ ଗାଆଁକୁ ଯାଇଥାଏ । ଶିତୁ ଭାଇନାଙ୍କ ସହ ମୋର ବ୍ୟକ୍ତିଗତ ନିବିଡ ସମ୍ପର୍କ ହେତୁ ପ୍ରଥମ ଦିନ ହିଁ ମୁଁ ତାଙ୍କ ଘରକୁ ଯାଇଥାଏ । ମନରେ ମୋର ଅନେକ ଗର୍ବ ଥାଏ, ଏତେ ଅଳ୍ପବୟସରେ ମୁଁ ଏତେ ବଡ କାର୍ଯ୍ୟଟିଏ କରି ପାରୁଛି ବୋଲି । ଭଞ୍ଜଙ୍କ ପରି କବି ସମ୍ରାଟଙ୍କ ବିଷୟରେ ମୁଁ ଜାଣିଛି ବୋଲି । ଧନୁ କକେଇ ଆନନ୍ଦରେ ଡାକି ପାଖରେ ବସାଇଲେ । ଖୁସି ମନରେ ବସି କଥା କହୁ କହୁ ଭଞ୍ଜ ଜୟନ୍ତୀ ବିଷୟରେ କହି ପକାଇଲେ । ଆରମ୍ଭ ହେଲା ତାଙ୍କର ସାହିତ୍ୟ ଜିଜ୍ଞାସା ! ଚରିତାର୍ଥ କରିପାରିବାର ପ୍ରଶ୍ନହିଁ ନଥିଲା । ସ୍ପଷ୍ଟଭାବରେ ସମର୍ପଣ କରିଗଲି । ମୋର ଅଭିଜ୍ଞତାକୁ ମାନିନେଇ ରକ୍ଷା ପାଇଗଲି । ମାତ୍ର ଭୟ ରହିଗଲା, ସେ ଭଞ୍ଜଙ୍କର କାବ୍ୟ କବିତା ବିଷୟରେ ଏତେକଥା ଜାଣିଲେ କିପରି ? ପରେ ଜାଣିଲି ଡଃ ଶୈଳେଶ୍ୱର ନନ୍ଦ ( କଳିଙ୍ଗ ଭାରତୀର ଜଣେ ନିଷ୍ଠାପର ଆଜୀବନ ସଭ୍ୟ ତଥା ସାଧାରଣ ସଂପାଦକ ) ମଧ୍ୟ ତାଙ୍କର ସଂପର୍କୀୟ ବୋଲି । ସେଇ ଯେ ଭୟ ରହିଗଲା, ଭଞ୍ଜଙ୍କର କିଛି କାବ୍ୟ ପଢିଛି, ଆୟତ୍ତ କରିବାର ଚେଷ୍ଟା କରିଛି, ମାତ୍ର ସାହସ ଆସି ନାହିଁ । ଆଉ ଭାଷଣ ଦେବାକୁ ଯାଇନାହିଁ । ମୋର ଏବେ ବି ମନେପଡ଼େ, ଆମ ଗାଆଁର ଜଣେ ସଂସ୍କୃତ ଛାତ୍ରକୁ ଶୁଶ୍ରୂଷା, ଆକାଂକ୍ଷା, ମୁମୂର୍ଷୁ ପରି କେତେକ ଶବ୍ଦର ବର୍ଣ୍ଣ ଶୁଦ୍ଧି ତଥା ଶବ୍ଦ ସାଧନ ସଂପର୍କରେ ପଚାରି ସେ କିପରି ଅସୁବିଧାରେ ପକାଇଥିଲେ । ତାଙ୍କର ସାହିତ୍ୟ ଜ୍ଞାନ ଓ ବର୍ଣ୍ଣବୋଧ ହିଁ ତାଙ୍କର ବିଲକ୍ଷଣ ପ୍ରତିଭାର ପ୍ରଥମ ପରିଚୟ ଦେଉଥିଲା ।

ତାଙ୍କର ସୁସ୍ଥ ପାରିବାରିକ, ସାମାଜିକ ତଥା ଡାକ୍ତରୀ ଜୀବନକୁ ଦେଖିଲେ ଯେ କୌଣସି ବ୍ୟକ୍ତି ମୁକ୍ତ କଣ୍ଠରେ ସ୍ୱୀକାର କରିବ ଯେ "ସେ ଏକ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ।" ଜଣେ ସଂପର୍କୀୟ ହିସାବରେ ଏସବୁର ଯଥେଷ୍ଟ ଅନୁଭବ ମୋର ରହିଥିଲା । ମୋ ନନା ତାଙ୍କର କି ପ୍ରକାର ଉପକାର କରିଥିଲେ ଛୋଟ ହୋଇଥିବାରୁ ସେକଥା ଜାଣିନାହିଁ । କିନ୍ତୁ ସବୁବେଳେ

ନନାଙ୍କ ପ୍ରତି ଯେପରି ଗଭୀର କୃତଜ୍ଞତା ପ୍ରକାଶ କରିଛନ୍ତି, ତାହା ଅନୁଭବ କରିଛି । ତେବେ ତାଙ୍କର ସବୁଠାରୁ ଗୋଟିଏ ଉଲ୍ଲେଖ୍ୟ ଗୁଣ ମୋତେ ତାଙ୍କ ପାଖରେ ନୀରବ କରି ଦେଉଥିଲା । ତାହା ହେଉଛି ତାଙ୍କର ପରିମିତ ଭାଷଣ । ସେ ସ୍ୱଭାବତଃ ଥିଲେ ମିତଭାଷୀ, ସମସ୍ତଙ୍କର ବନ୍ଧୁ, ସୁଖ-ଦୁଃଖର ସକ୍ରିୟ ସହଯୋଗୀ, ଅଥଚ ମିତଭାଷୀ । ହିମାଳୟ ଦର୍ଶନ ତ ସମ୍ଭବ ନୁହେଁ ସଂକ୍ଷେପରେ ମୁଁ ଏତିକି କହିପାରେ—

ଅଷ୍ଟୌଗୁଣାଃ ପୁରୁଷଂ ଦୀପୟନ୍ତି
ପ୍ରଜ୍ଞା ଚ କୌଲ୍ୟଞ୍ଚ ଦମଃ ଶ୍ରୁତଞ୍ଚ ।
ପରାକ୍ରମଶ୍ଚାବହୁଭାଷିତା ଚ
ଦାନଂ ଯଥାଶକ୍ତିଃ କୃତଜ୍ଞତା ଚ ।।

ଏ ସମସ୍ତ ଗୁଣର ସେ ଥିଲେ ଏକ ଜୀବନ୍ତ ଉଦାହରଣ- ଆଦର୍ଶ ମୋ ନନାଙ୍କ ପରେ ମୋର ସଂଘର୍ଷମୟ ଜୀବନର ପ୍ରଧାନ ପଥପ୍ରଦର୍ଶକ । ଆଜି ସେ ଦିବଂଗତ ମହାନ୍ ଆତ୍ମାଙ୍କୁ ସ୍ମରଣ କରି ତାଙ୍କ ଉଦ୍ଦେଶ୍ୟରେ ମୋର ସାଶ୍ରୁଳ ଭକ୍ତି-ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

✻ ନୟାଗଡ ମହାବିଦ୍ୟାଳୟ
ନୟାଗଡ଼



# ଜୀବନ ସଂଗ୍ରାମର ଅପରାଜିତ ନାୟକ

## ଡାକ୍ତର ଶୈଳେଶ୍ୱର ନନ୍ଦ

ଆଜକୁ ତିରିଶ ବର୍ଷ ତଳେ, ଜୁଲାଇ ୪ ତାରିଖ ୧୯୬୧ ମସିହାରେ ପୁରୀ ସହରର ଏକ ଧର୍ମଶାଳାରେ ମୋ ବଡ଼ ଭଉଣୀଙ୍କର ବାହାଘର ଧୁମଧାମ ଭିତରେ ମୋର ସାକ୍ଷାତ ହୁଏ ବୈଦ୍ୟନାଥଙ୍କ ସଙ୍ଗେ। ସେହି ଦିନ ଠାରୁ ମୋ ବଡ଼ ଭଉଣୀ, ତାଙ୍କ ଭଉଣୀଙ୍କର ଶଶୁର ହେଲେ। ଏଣୁ ଆମେ ଦୁହେଁ ମଧ୍ୟ ହେଲୁ ସମ୍ପର୍କୀୟ। ଆମେ ସମସାମୟିକ। ସେହିବର୍ଷ ଦୁହେଁ ପ୍ରି ପ୍ରଫେସନାଲ ପରୀକ୍ଷା ଦେଉଥାଉ। ପ୍ରଥମ ଦେଖାରୁ ଆମ ଦୁହିଁଙ୍କ ଭିତରେ ବନ୍ଧୁତ୍ୱର ଏକ ନିବିଡ଼ତା ସୃଷ୍ଟି ହୋଇଥିଲା। ବାହାଘର ପରେ ପୁଣି ମୋର ଦେଖାହେଲା ଶ୍ରୀ ରାମଚନ୍ଦ୍ରଭଞ୍ଜ ମେଡିକାଲ କଲେଜ ପରିସରରେ। ଦୁହେଁ ଯାଇଥାଉ ମେଡ଼ିକାଲ ଛାତ୍ର ସାଜିବାକୁ। ସେ ବର୍ଷ ସେ ହେଲେ ମେଡିକାଲ ଛାତ୍ର କିନ୍ତୁ ମୁଁ ଫେରିଲି ନିରାଶ ହୋଇ। ଦୋଷ ଥିଲା ମୋ ବୟସର। ମେଡ଼ିକାଲ ଛାତ୍ର ହେବାକୁ ନିର୍ଦ୍ଧାରିତ ବୟସ ସୀମାଠାରୁ ମୋର ବୟସ ୪ ଦିନ ଊଣା ପଡିଗଲା। ଏଣୁ ବୈଦ୍ୟନାଥ ମୋଠାରୁ ମେଡିକାଲ ଜୀବନରେ ବର୍ଷେ ସିନିୟର। କିନ୍ତୁ ପାରିବାରିକ ସମ୍ପର୍କସହ ଆମର ଆନ୍ତରିକତା କେବେ ନ୍ୟୁନ ହୋଇ ନାହିଁ।

ବୈଦ୍ୟନାଥ ଥିଲେ ଜଣେ ମେଧାବୀ ଛାତ୍ର। ଜଣେ ଉଚ୍ଚକୋଟିର ବାଗ୍ମୀ, ଲେଖକ, ନାଟ୍ୟକାର ଓ ନେତା। ଆଜି ଡାକ୍ତରୀ ବେଉସାରେ ଜଣେ ଜନପ୍ରିୟ ଡାକ୍ତର ଓ ଦକ୍ଷ ସ୍ତ୍ରୀ ରୋଗ ବିଶେଷଜ୍ଞ। ଜୀବନର ପ୍ରତ୍ୟେକ ପଦକ୍ଷେପରେ ସେ ନିଜର ଦକ୍ଷତା ଓ ପାରଦର୍ଶିତା ପ୍ରଦର୍ଶନ କରି ସୁନାମ ଅର୍ଜନ କରି ଯାଇଅଛନ୍ତି। ଜୀବନରେ କୌଣସି କାର୍ଯ୍ୟରେ ସେ କେବେ ପରାଜୟ ସ୍ୱୀକାର କରି ନାହାନ୍ତି।

ଚାନ୍ସ ହେଲେ ବି ସାହିତ୍ୟ କ୍ଷେତ୍ରରେ ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱୀ ହେବାର ଅବକାଶ ଆସିଛି । ସେଠିବି ମୋତେ ପରାଜିତ କରି ସେ ହୋଇଛନ୍ତି ବିଜିତ । ୧୯୬୩ ମସିହା, ମୋ ସେକେଣ୍ଡ ଇୟର ଓ ତାଙ୍କର ଥାର୍ଡ ଇଅର । ଆନ୍ତଃକଲେଜ ବେତାର ନାଟକ ପ୍ରତିଯୋଗିତା ପାଇଁ ମେଡିକାଲରୁ ବୈଦ୍ୟନାଥର ଓ ମୋର ଦୁଇଟି ନାଟକ ଯାଇଥାଏ । ମୋ ନାଟକର ନାମ ଥିଲା "ଆହୁତି" ଓ ତାଙ୍କର "ଆଖି" । ପାଣ୍ଡୁଲିପି ଦୁଇଟି ସମୀକ୍ଷା ପାଇଁ ଅନ୍ୟାନ୍ୟ କଲେଜମାନଙ୍କର ପାଣ୍ଡୁଲିପି ସହ ବିଚାରକଙ୍କ ପାଖକୁ ଯାଇଥାଏ । ଆମେ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରିଥାଉ ଫଳାଫଳ ପାଇଁ । ପ୍ରାୟ ମାସେ ପରେ ଖବର ଆସିଲା । ବୈଦ୍ୟନାଥଙ୍କ "ଆଖି" ପ୍ରଥମ ଓ ମୋ "ଆହୁତି" ଦ୍ୱିତୀୟ ସ୍ଥାନ ଅଧିକାର କଲା । ପ୍ରଥମେ 'ଆଖି' ମେଡିକାଲ ଛାତ୍ରମାନଙ୍କୁ ନେଇ ବେତାରରେ ପ୍ରସାରିତ ହେଲା । ପରେ ଆହୁତି ମଧ୍ୟ ୧୯୬୪ ରେ ବେତାରରେ ପ୍ରସାରିତ ହେଲା ।

ସେ ଯାହା ହେଉ 'ଆଖି' ପ୍ରଥମ ସ୍ଥାନ ଅଧିକାର କରି ମେଡିକାଲ ଛାତ୍ରମାନଙ୍କ ପାଇଁ ସୁନାମ ଆଣିଦେଲା । ମେଡିକାଲ ଛାତ୍ର-ମାନେ ମଧ୍ୟ ବେଶ ଚମତ୍କାର କରି ପରିବେଷଣ କରିଥିଲେ ନାଟକଟିକୁ । ସେ ନାଟକ ଯେଉଁମାନେ ପଢ଼ିଥିବେ ବା ଶୁଣିଥିବେ ସେମାନେ ନିଶ୍ଚୟ କହିବେ ଯେ ବୈଦ୍ୟନାଥ ଜଣେ ଉଚ୍ଚ ମାନର ନାଟ୍ୟକାର । ତାଙ୍କର ଚିନ୍ତାଶକ୍ତି-ଚରିତ୍ର ଚୟନ ଓ କାନ୍ତକୋମଳ ହୃଦୟର ସେହି ପ୍ରେମର ଆବେଗ ଅବବୋଧ ପ୍ରତ୍ୟେକଟି ଚରିତ୍ରକୁ ମନୋଜ୍ଞ କରିପାରିଥିଲା । ନାଟକର କ୍ଲାଇମାକ୍ସ ଓ ତତ୍ସହିତ ସନ୍ନିବେଶିତ ଭାବ ପ୍ରବଣତା ଦର୍ଶକ ଓ ପାଠକ ପ୍ରାଣରେ ଏକାଠି ଆଖିରେ ଲୁହ ଓ ମନରେ ଭାବୋଚ୍ଛ୍ୱାସ ଆଣିବାକୁ ସମର୍ଥ ଥିଲା । ନାୟିକାର ସୁନ୍ଦର ଚଳ ଚଳ ଆଖି ଯୋଡିକ ନାୟକ ପାଇଁ ଥିଲା ସବୁକିଛି । ଆଖି ଭିତରେ ନାୟକ ହଜାଉଥିଲା ନିଜକେ । ହଜାଇ ଦେଉଥିଲା ସମସ୍ତ ସାଂସାରିକ ଦୁଃଖ

ଯନ୍ତ୍ରଣାକୁ । ଏ ଜଗତରେ ତାଠାରୁ ଅଧିକ ମୂଲ୍ୟବାନ କିଛି ନାହିଁ ନାୟକ ପାଇଁ । କିନ୍ତୁ ବଧିର ବଧାନ ବଚନ, ସେଇ ମାଦକଭରା ମୀନ ନୟନା ଯେତେବେଳେ ତାର ଦୃଷ୍ଟି ଶକ୍ତି ହରେଇ ବସେ ସେତେବେଳେ ତାର ନାୟକ ପ୍ରାଣ ଶତଧା ବିଦୀର୍ଣ୍ଣ ହେବା ସ୍ୱାଭାବିକ । ଏହି ମର୍ମସ୍ପର୍ଶି କାହାଣୀର ନାଟକୀୟ ପ୍ରକାଶରେ ଆଖି ବେଶ ସମସ୍ତଙ୍କଠାରେ ଆଦୃତ ହୋଇଥିଲା । ନାଟ୍ୟକାର ବୈଦ୍ୟନାଥଙ୍କର ସେ ଥିଲା ଏକ ସଫଳ ସୃଷ୍ଟି ।

ଜଣେ ସୁବକ୍ତା ଭାବେ ବୈଦ୍ୟନାଥ ବହୁ ସ୍ଥାନରେ ହୋଇଥିଲେ ସମ୍ମାନିତ । ବିଶ୍ୱବିଦ୍ୟାଳୟ ତର୍କ ପ୍ରତିଯୋଗିତାରେ ପ୍ରଥମ ହୋଇ ସେ ପାଇଥିଲେ ଚ୍ୟାନସଲର କପ । ଏହା ତାଙ୍କ ପାଇଁ ତଥା ଶ୍ରୀ ରାମଚନ୍ଦ୍ର-ଭଞ୍ଜ ମେଡ଼ିକାଲ କଲେଜ ପାଇଁ ମଧ୍ୟ ଥିଲା ଗର୍ବ ଓ ଗୌରବର ବିଷୟ ।

ଛାତ୍ର ଜୀବନର ଅଠ୍ୟାରମ୍ଭରୁ ସେ ଥିଲେ ଜଣେ ସ୍ପଷ୍ଟବାଦୀ ନିର୍ଭିକ ନେତା । ୧୯୬୪ରେ ଯୁବ ସଂସଦର ସେ ସମ୍ପାଦକ ଥିଲେ । ସେ ବର୍ଷ ଥିଲା ଏକ ସଂଗ୍ରାମର ବର୍ଷ ଆନ୍ଦୋଳନର ବର୍ଷ । ସଭାପତି ବନ୍ଧୁ ପ୍ରମୋଦ ସାମନ୍ତରାୟ ଆଉ ସମ୍ପାଦକ ବୈଦ୍ୟନାଥ ମିଶ୍ରଙ୍କ ଉପରେ ନିଖିଳ ଉତ୍କଳ ଛାତ୍ର ନିଯୁକ୍ତାନୁଷ୍ଠାନ ସମିତି ଆନ୍ଦୋଳନ ପରିଚାଳନାର ଭାର ସମର୍ପଣ କରିଥାଆନ୍ତି । ସାରା ଓଡ଼ିଶାର ଛାତ୍ର ନେତାମାନେ ମେଡ଼ିକାଲ ହଷ୍ଟେଲରେ ଭିଡ଼ ଜମାଇ ଥାଆନ୍ତି । ଅଭିଭାଷଣ ଓ ବାଙ୍ଗ ପଟୁଆ ସହ ଉତ୍ତେଜିତ ଅବସ୍ଥାର ଏକ ପୁଙ୍ଖାନୁପୁଙ୍ଖ ପ୍ରାଞ୍ଜଳ ଉପସ୍ଥାପନା କରି ବୈଦ୍ୟନାଥ ଛାତ୍ର-ସମାଜର ପ୍ରିୟତର ହୋଇ ପାରିଥିଲେ । ଶେଷରେ ଛାତ୍ରମାନେ ଜୟଯୁକ୍ତ ହେଲେ ସରକାର ଛାତ୍ରମାନଙ୍କ ସହ ବୁଝାମଣା କଲେ । ଏ ଥିଲା ଛାତ୍ର ଜୀବନରୁ ତାଙ୍କ ନେତୃତ୍ୱର ମୂଲ୍ୟାୟନ ।

ପରବର୍ତ୍ତୀ ସମୟରେ ହାଉସଷ୍ଟାଫ ଆସୋ ଏସନ ଠାରୁ ଓଡ଼ିଶା ମେଡ଼ିକାଲ ସର୍ଭିସେସ ଆସୋସିଏସନ ଯାଏଁ ସବୁଠି ସେ ନେତୃତ୍ୱର ସଫଳ ପଦଚିହ୍ନ ଛାଡ଼ି ଯାଇ ଅଛନ୍ତି । ଓମସାର ସମ୍ପାଦକ ଭାବେ ସାରା ଓଡ଼ିଶାର ଡ଼ାକ୍ତରମାନଙ୍କୁ ସମସ୍ତ ବିଭିନ୍ନତା ମଧ୍ୟରେ ଏକ ଓ ଅଭିନ୍ନ ରଖିବାକୁ ସେ ଥିଲେ ସଂକଳ୍ପବଦ୍ଧ । ଅଧିକ ସଂଖ୍ୟକ ସଭ୍ୟମାନଙ୍କ ବିଗ୍ଧରରେ ହଁ ଭରିବା ଲୋକ ସେ ନଥିଲେ । ଯାହା ଉଚିତ୍ ତାହାହିଁ କରଯାଉ ଏକଥା ବଜ୍ର ନିର୍ଘୋଷ କଣ୍ଠରେ ବହୁବାର ଓମସାର ବୈଠକରେ ସେ କରିବାର ମୁଁ ଶୁଣିଛି । ଏପରିକି ସଭାପତି ଓ ଅନ୍ୟାନ୍ୟ ବରିଷ୍ଠ କର୍ମ-କର୍ତ୍ତାମାନଙ୍କୁ ବିରୋଧ କରି ସେ ସେମାନଙ୍କର ଅପ୍ରୀୟ ପଛେ ହେଉଥିଲେ କିନ୍ତୁ ଯାହା ନ୍ୟାୟୋଚିତ ସେଥିରୁ ତିଳେମାତ୍ର ବିଚ୍ୟୁତ ହେଉ ନଥିଲେ । ଏପରି ସ୍ପଷ୍ଟବାଦୀ ଓ ବିଗ୍ଧର ଶୀଳ ନେତୃତ୍ୱ ଆଜି ଦୁନିଆରେ ଖୁବ୍ କମ ନେତାଙ୍କ ଠାରେ ମିଳିଥାଏ । ସେହି ଓମସାର କାର୍ଯ୍ୟକାରୀ ସମିତି ବୈଠକର ଉଷ୍ଣ ବାତାବରଣରୁ ଫେରୁ ଫେରୁ ସେ ମୃତ୍ୟୁକୁ ଆଲିଙ୍ଗନ କରି ତାଙ୍କ ନେତୃତ୍ୱର ପରକାଷ୍ଠା ଘୋଷଣା କରିଗଲେ । ମରଣ ପଛେ ଶ୍ରେୟସ୍କର କିନ୍ତୁ ଶରଣ ପଶି ନିଜର ନିଜସ୍ୱ ସ୍ୱାତନ୍ତ୍ର୍ୟକୁ ବଳି ଦବାର ଲୋକ ସେ ନଥିଲେ । ଛତାପାର୍ଟି ବାଲାଙ୍କୁ ସେ ଘୃଣା କରୁଥିଲେ । ଏଣୁ ବୈଦ୍ୟନାଥ ଜୀବନକୁ ଏକ ସଂଗ୍ରାମ ରୂପେ ଗ୍ରହଣ କରି ଜଣେ ସଂଗ୍ରାମୀ ସୈନିକ ଭାବେ ଅବତୀର୍ଣ୍ଣ ହେଉଥିଲେ ଓ ପ୍ରାୟ ପ୍ରତ୍ୟେକଟି ପଦକ୍ଷେପରେ ସେ ବିଜୟ ହିଁ ହାସଲ କରିବାକୁ ସକ୍ଷମ ହେଉଥିଲେ ।

୧୯୮୮-୮୯ରେ ସରକାରଙ୍କ ସହ ଡାକ୍ତରମାନଙ୍କର ଆଉ ଏକ ଘମାଘୋଟ ଲଢ଼େଇ ଲାଗିଥିଲା । ଏହି ପରିପ୍ରେକ୍ଷୀରେ ଡ଼ାକ୍ତର ସଙ୍ଘର

ନେତା ମାନଙ୍କୁ ସ୍ଥାନାନ୍ତରିତ କରିବାର ନିଷ୍ପତ୍ତି ନେଲେ ସରକାର । ବୈଦ୍ୟନାଥ ଡ଼ାକ୍ତରମାନଙ୍କ ନେତା ତାଲିକାର ପ୍ରଥମ କେତେଜଣଙ୍କ ମଧ୍ୟରୁ ଜଣେ । ଏଣୁ ସେ ମଧ୍ୟ ଶୀକାର ହେଲେ । ଚାକିରୀ ଜୀବନର ଅନେକ ବର୍ଷ ସମ୍ବଲପୁରରେ ରହି ସେଠୁ ପୁରୀ ଫେରିବାର ଅଳ୍ପଦିନ ହୋଇଥାଏ । ଆସିଲା ବଦଳି ଆଦେଶ । ସରକାରୀ ଆଦେଶନାମାକୁ ମୁଣ୍ଡପାତି ସହିନେବାକୁ ଉଚିତ ମନେ କଲେନି ବୈଦ୍ୟନାଥ । ଆଇନର ଆଶ୍ରୟ ନେଇ ଟ୍ରିବ୍ୟୁନାଲରେ କେସ କଲେ ସେ । ତାଙ୍କ ବଦଳି ଯେ ସ୍ୱାର୍ଥ ପ୍ରଣୋଦିତ ଏହା ପ୍ରମାଣିତ ହୋଇ ତାଙ୍କ ବଦଳି ଆଦେଶ ପ୍ରତ୍ୟାହୃତ ହେଲା । ଏହା ତାଙ୍କ ଜୀବନ ସଂଗ୍ରାମରେ ହାସଲ କରିଥିବା ବିଜୟ ବୈଜୟନ୍ତୀର ପରିଚାୟକ ନୁହେଁ କି ? ତାଙ୍କର ଜୀବନର ଅବସାନ ପରେ ତତ୍‌କାଳୀନ ସ୍ୱାସ୍ଥ୍ୟ ମନ୍ତ୍ରୀ ନିଜେ ତାଙ୍କ ଏକାଦଶାହ କାର୍ଯ୍ୟରେ ଯୋଗଦେବା ଅବସରରେ ଏହା ସ୍ୱୀକାର କରିଥିଲେ ।

ପାରିବାରିକ ଜୀବନରେ ବଡ଼ ଭଉଣୀଙ୍କ ଅକାଳ ବିୟୋଗ ପରେ ସାହସର ସହ ସମସ୍ତ ପାରିବାରିକ ଦାୟିତ୍ୱକୁ ସେ ବହନ କରିଥିଲେ ସନ୍ଦର୍ଭେ ପତ୍ନୀ ହେମଲତାଙ୍କ ସହାୟତ ରେ । ମହାନ ଆଦର୍ଶବାଦୀ ବୈଦ୍ୟନାଥଙ୍କ ଜୀବନର ପ୍ରେରଣା ଓ ଉତ୍ସାହର ସମସ୍ତ କେନ୍ଦ୍ରବିନ୍ଦୁ ଥିଲେ ପ୍ରାଣପ୍ରିୟା ପତ୍ନୀ ହେମଲତା । ଘରେ ବାହାରେ, ହସପିଟାଲଠାରୁ ରୋଗୀ ସେବାଯାଏ ସବୁଥିରେ ହେମଲତା ତାଙ୍କୁ ଓ ସେ ହେମଲତାଙ୍କୁ ସହାୟତା କରି ଆସିଥାନ୍ତି । ପାରିବାରିକ ଜୀବନକୁ ସୁନ୍ଦର କରିବାରେ ଦୁହେଁ ଥିଲେ ଚେଷ୍ଟିତ ।

ଆଜି ସୁଦ୍ଧା ହେମଲତାଙ୍କ ଆଖିର ଲୁହ, ବୁକୁର କୋହ ସରି ନାହିଁ । ଧୈର୍ଯ୍ୟର ବନ୍ଧ ଭୁସୁଡ଼ି ପଡ଼ିଛି । ତାଙ୍କର ହୃଦୟର ବିଳାପ ଓ ସଜଳ

ନୟନ ଦେଖିଲେ ଯେ କେହି ଧୈର୍ଯ୍ୟ ହରା ହେବ । ଭଗବାନଙ୍କୁ ପ୍ରଶ୍ନ କରିବ କାହିଁକି ଏତେ କଷ୍ଟ ଦେଲ ତାଙ୍କୁ ? ବୋଧହୁଏ ଉତ୍ତର ଆସିବ ପରୀକ୍ଷା । ଜୀବନର ଆଉ ଏକ ପରୀକ୍ଷା । ଜୀବନର ବିକଟ ବାସ୍ତବତା ଭିତରେ ଧୈର୍ଯ୍ୟ ସାହାସ ଓ ଶକ୍ତି ସଞ୍ଚୟ କରି ବଞ୍ଚିବାର ପ୍ରତିଜ୍ଞା ।

ବୈଦ୍ୟନାଥ ସେଇ କେତେଜଣଙ୍କ ଭିତରୁ ଜଣେ ଯେ ଜୀବନର ସ୍ୱଳ୍ପ ସମୟ ମଧ୍ୟରେ ବହୁ ଅମ୍ଳାନ ଜାଜ୍ୱଲ୍ୟମାନ କୀର୍ତ୍ତି ସୌଧମାନ ଗଢି ଯାଇଅଛନ୍ତି । ହେ ପତିପ୍ରାଣା ହେମଲତା ! ସେଇ କୀର୍ତ୍ତିମାନଙ୍କର ଯଶ ଓ ଐଶ୍ୱର୍ଯ୍ୟର ପତାକାକୁ ଉତ୍ତୋଳିତ କରି ଧୈର୍ଯ୍ୟ ଓ ସାହାସର ସହ ଆଗକୁ ଆଗେଇ ଚାଲ । ଜୀବନକୁ ଗ୍ରହଣ କର । ଜୀବନ ସଂଗ୍ରାମରେ ହାରିଗଲେ ସମୟର କରାଳକବଳରେ ହଜିଯିବ କିନ୍ତୁ ଜିତିଲେ ତୁମେ ମଧ୍ୟ କୀର୍ତ୍ତିବତୀ ହେବ — ହେବ ଯଶସ୍ୱୀ । ସମୟକୁ ତା ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇ ପାରିବ ।

ବୈଦ୍ୟନାଥ ! ଆମ ଅଜାଣତରେ ଏତେ ଶୀଘ୍ର ଆମଠାରୁ ବିଦାୟ ନେବ ବୋଲି ତୁମେ ବୋଧହୁଏ ଏତେ କାମ ଏତେ ସ୍ୱଳ୍ପ ସମୟ ମଧ୍ୟରେ ପାରଦର୍ଶିତାର ସହ କରି ନିଜର ଅଲିଭା ପଦଚିହ୍ନ ଛାଡ଼ିଗଲ । ମୃତ୍ୟୁ ଜୀବନଠାରୁ ନିଶ୍ଚୟ ଅଧିକ କିନ୍ତୁ ଭୟଙ୍କର ସତ୍ୟ । ତଥାପି ମୃତ୍ୟୁ ତୁମକୁ କବଳିକୃତ କରିବାକୁ ଯାଇ ହାରି ଯାଇଛି । କାଳ ବକ୍ଷରେ ତୁମେ ବିଲୀନ ହୋଇନ ବରଂ ହୋଇଛ ଜାଜ୍ୱଲ୍ୟମାନ । ତୁମେ ହୋଇଛ ମୃତ୍ୟୁଞ୍ଜୟୀ । ତୁମ ଅଗଣିତ ବନ୍ଧୁ, ସଖା ସହୋଦରଙ୍କ ମଧ୍ୟରେ ତୁମେ ବଞ୍ଚିଛୁ ତୁମର ଯଶ ଓ ଖ୍ୟାତି ନେଇ । ତୁମର ପୁଅ ଝିଅ ପୁତୁରା ଝିଆରୀମାନଙ୍କ ଭିତରେ ପ୍ରବାହିତ ରକ୍ତରେ ତୁମେ କଥା କହୁଛ । ସ୍ମୃତି ଆଉ କୀର୍ତ୍ତି

ଭିତରେ ତୁମେ ବଞ୍ଚିଛ ବଞ୍ଚିବ । ପ୍ରତିଭାର ମୃତ୍ୟୁ ନାହିଁ । ତୁମେ ଜୀବନ ସଂଗ୍ରାମର ଏକ ଅପରାଜିତ ନାୟକ । ବିଜିତ ସମ୍ରାଟ ।

ବିଶ୍ୱକବି ସେକ୍ସପିଅରଙ୍କ ମୃତ୍ୟୁରେ ମିଲଟନଙ୍କର ସେହି ଉକ୍ତି ଆଜି ମନେ ପଡ଼ିଯାଏ– "ହେ ବିଶ୍ୱକବି ! ତୁମେ ଲୋକ ସ୍ମୃତିରେ ଆଡମ୍ବରରେ ନିଦ୍ରାଗତ ଯେ ତୁମର ଐଶ୍ୱର୍ଯ୍ୟ ଦେଖି ମୁକୁଟଧାରୀ ସମ୍ରାଟ-ମାନେ ମଧ୍ୟ ହିଂସା କରୁଛନ୍ତି । ଜୀବିତାବସ୍ଥାରେ ମରଣକୁ ଆହ୍ୱାନ କରୁଛନ୍ତି ।" ଏ ଉକ୍ତିର ମମତା ଆଜି ତୁମର ଦେହାନ୍ତରେ ମଧ୍ୟ ପ୍ରଯୁଜ୍ୟ ପରି ପ୍ରତୀତ ହେଉଛି–ବୈଦ୍ୟନାଥ !

※ ସଂପାଦକ
ଓଡ଼ିଶା ସାହିତ୍ୟ ନାଟକ ଏକାଡ଼େମୀ
ଭୁବନେଶ୍ୱର



# ବୈଦ୍ୟନାଥଙ୍କୁ ମୁଁ ଯେମିତି ଜାଣେ

## ଅଧ୍ୟାପକ ଡାକ୍ତର ଆକୁଳାନନ୍ଦ ଷଡ଼ଙ୍ଗୀ

୧୯୭୭ ମସିହା । ସରକାରୀ ଡାକ୍ତରମାନେ ଓଡ଼ିଶା ମେଡ଼ିକାଲ ସର୍ଭିସେସ୍ ଆସୋସିଏସନ ବା 'ଓମସା' ତରଫରୁ ସରକାରଙ୍କ ପାଖରେ କେତକ ଦାବୀ ଉପସ୍ଥାପିତ କରିଥିଲେ । ମୁଁ ସେତେବେଳେ ସଭାପତି ଓ ସ୍ୱର୍ଗତ ଡାକ୍ତର ବୈଦ୍ୟନାଥ ମିଶ୍ର କାର୍ଯ୍ୟକାରୀ ସମିତିର ଏକ ସଭ୍ୟ । ଯେ କୌଣସି ବିଷୟରେ ଆମେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ପରେ ଏକ ନିଷ୍ପତ୍ତି ନେଇ ସରକାରଙ୍କ ପାଖରେ ପହଞ୍ଚାଇବା ଓ ଦ୍ୱନ୍ଦ୍ୱ ରହିତ ସ୍ପଷ୍ଟତାର ସହିତ ଦାବୀ ସମ୍ପର୍କରେ ଯୁକ୍ତି ବାଢ଼ିବା ଥିଲା 'ଓମାସା'ର ପଦାଧିକାରୀମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । କୌଣସି ଜଟିଳ ପ୍ରଶ୍ନ ବା ସମସ୍ୟା ଉପରେ ସାଧାରଣ ଅଧିବେଶନରେ ଆଲୋଚନା କରିଆରେ ସଭ୍ୟମାନଙ୍କର ସାମୁହିକ ମତ ନେବାର ଆବଶ୍ୟକତା ପଡ଼ୁଥିଲା ।

ସେହି ସମୟରେ ମୁଁ ବୈଦ୍ୟନାଥର ଏକ ଅସାଧାରଣ ପ୍ରତିଭାର ପରିଚୟ ପାଇଥିଲି । କୌଣସି ବିଷୟରେ କେବଳ ଭାବପ୍ରବଣତାରେ ଭାସି ନଯାଇ ଯୁକ୍ତିଯୁକ୍ତ ଭାବରେ ବିଷୟର ଉତ୍ଥାପନ କରିବା ଓ ସନ୍ଧାନ ମୁହୂର୍ତ୍ତରେ ଏକ କାର୍ଯ୍ୟକାରୀ ସୂତ୍ର ଆବିଷ୍କାର କରିବାରେ ସେଥିଲା ଆମ ସମସ୍ତଙ୍କ ଭିତରେ ଏକ ଅଦ୍ୱିତୀୟ ବ୍ୟକ୍ତି ।

ସେ ମତେ 'ସାର୍' ଡାକୁଥିଲା । ମୁଁ ତାକୁ ଛାତ୍ର ହିସାବରେ ଓ ସହକର୍ମୀ ହିସାବରେ ସମ୍ବୋଧନ କରୁଥିଲି । ମୁଁ ରେଜିଷ୍ଟ୍ରାର ଥିଲାବେଳେ ତାକୁ ମେଡ଼ିକାଲ କଲେଜରେ ପାଠ ପଢ଼ାଇଥିଲି । ତେଣୁ 'ଓମସା' ଆନ୍ଦୋଳନବେଳେ ସମୟେ ସମୟେ ମତ ପାର୍ଥକ୍ୟ ହେଲେ ସୁଦ୍ଧା ତାର ମୋ ପ୍ରତି ଭକ୍ତି ଓ ମୋର ତା' ପ୍ରତି ଶ୍ରଦ୍ଧା ଅତୁଟ ରହିଥିଲା ।

ଭାଷାରେ ଶାଳୀନତା, ବ୍ୟବହାରରେ ମାର୍ଜିତ ରୁଚି, ସାଧାରଣ ବ୍ୟବହାରରେ ଅକପଟତା ଓ ଯୁକ୍ତିତର୍କ ବେଳେ ଏକ ସୌଜନ୍ୟପୂର୍ଣ୍ଣ ମାନସିକତା ଥିଲା ବୈଦ୍ୟନାଥର ବିଶିଷ୍ଟ ଗୁଣ ସମ୍ଭାର ।

ଡାକ୍ତର ହିସାବରେ ବୈଦ୍ୟନାଥର ଲୋକପ୍ରିୟତା ସେ ସମ୍ବଲପୁର ହସ୍ପିଟାଲରେ କାମ କରୁଥିବା ବେଳେ ଜାଣିବାକୁ ପାଇଲି । କେତେ ସମସ୍ୟା ଜଡ଼ିତ ରୋଗୀଙ୍କୁ ଦେଖିବା ବେଳେ ମୁଁ ବୈଦ୍ୟନାଥ ସହିତ ଆଲୋଚନା କରିଛି । ବିଶ୍ଳେଷଣାତ୍ମକ ମନୋଭାବ ନେଇ ଏକ ସିଦ୍ଧାନ୍ତରେ ପହଞ୍ଚିବାରେ ସେ ଗୁରୁତ୍ୱ ଦେଉଥିଲା । ରୋଗୀର ମାନସିକ ସ୍ଥିତି ପ୍ରତି ସମ୍ବେଦନଶୀଳ ହୋଇ ତା'ର ଉପଯୁକ୍ତ ଚିକିତ୍ସା କରିବା ତାକୁ ଲୋକପ୍ରିୟ କରି ପାରିଥିଲା ।

ଯେ କୌଣସି ବିଷୟ ଅଧ୍ୟୟନ କରି ଜ୍ଞାନ ଅର୍ଜନ କରିବାର ପିପାସା ବୈଦ୍ୟନାଥର ସବୁବେଳେ ଅତୁଟ ରହିଥିଲା ଏବଂ କୌଣସି ବିଷୟରେ ସଠିକ ଜ୍ଞାନ ନଥାଇ ଉପରଠାଉରିଆ ଭାବରେ ମତ ଦେବା ତା ନୀତି ବିରୁଦ୍ଧ ଥିଲା ।

ମୁଁ ଯେଉଁଦିନ ତା'ର ମୃତ୍ୟୁ ଖବର ଶୁଣିଲି, ବିଶ୍ୱାସ କରିପାରିଲିନି ଯେ ସେଆଉ ଆମ ଭିତରେ ନାହିଁ । ବିସ୍ମୟରେ ଜମ୍ ହୋଇଥିଲି । ତା'ର ସ୍ତ୍ରୀ ସେ ଦେଶ୍ ସୁସ୍ଥ-ଜୀବନ ଯାପନ କରୁଥିଲା । ଅଳ୍ପ କେତେ ଦିନ ଆଗରୁ ମୁଁ ତାକୁ ଏକ ସାମାଜିକ ଉତ୍ସବରେ ଦେଖିଥିଲି ଏବଂ ଅନେକ ଆନ୍ତରିକ ବାକ୍ୟାଳାପରେ ଦୁଇଜଣ ସମୟ କଟାଇ ଥିଲୁ ।

ବୈଦ୍ୟନାଥର ଅକାଳ ପ୍ରୟାଣ ମତେ ଦାରୁଣ ଆଘାତ ଦେଇଛି । ଆମର ଚିକିତ୍ସା କ୍ଷେତ୍ରରେ ଏକ ପ୍ରତିଭାମାନ ଡାକ୍ତର ସବୁଦିନ ପାଇଁ ଉଭେଇଗଲେ । ଡାକ୍ତର ସଂପ୍ରଦାୟର ମୂତ୍ରମୂତ୍ର ଦାୟୀର ଏକ ପ୍ରାଂଜଳ ପ୍ରବକ୍ତାଙ୍କର ସ୍ଥାନ ଶୂନ୍ୟ ହୋଇଗଲା । ବୈଦ୍ୟନାଥର ଶୋକସନ୍ତପ୍ତ ପରିବାର ବର୍ଗଙ୍କର ଯେଉଁ ଅପୂରଣୀୟ କ୍ଷତି ଘଟିଲା ତାହା ବର୍ଣ୍ଣନାତୀତ । ଏଥିକି ପ୍ରାର୍ଥନା, ବୈଦ୍ୟନାଥର ଆତ୍ମା ସଦ୍‌ଗତି ହେଉ ଏବଂ ବୈଦ୍ୟନାଥର ଅବିନାଶୀ ଆତ୍ମା ତା'ର ପରିବାର ବର୍ଗ ଓ ଆମ ସମସ୍ତଙ୍କୁ ତା'ର ସ୍ମୃତି ସ୍ମରଣରେ ଉଦ୍‌ବୁଦ୍ଧ କରୁ ।

—※—

କଟକ

# ଏକ ଉଦଗ୍ରଧ ପ୍ରାଣର ଶତ ପ୍ରଣିପାତ

ଶ୍ରୀ ଗଣେଶ୍ୱର ମହାପାତ୍ର

ହେ ବରେଣ୍ୟ ଅଗ୍ରଜ !

ଆଜିର ଏ ବେଳା ଏକ ଅନ୍ତର୍ବେଦନାର ସ୍ୱରଲିପିରେ ଆନ୍ଦୋଳିତ । ବିଧିର ଅଜଣା ଆହ୍ୱାନରେ ଆପଣ ଆମଠାରୁ ଦୂରେଇଗଲେ । ହେଲେହେଁ ଅନେକଙ୍କର କୋହ ଭିତରେ ମୋର ବ୍ୟକ୍ତିଗତ ଅନ୍ତର୍ବେଦନା ଆଜି ଗୁମୁରି ଉଠିଛି ଆପଣଙ୍କ ସ୍ମୃତି ବିଜଡ଼ିତ ଅତୀତକୁ ଦୃକ୍‌ପାତ କରି ।

ହେ ମହନୀୟ !

ସଂସାରର ରଙ୍ଗମଞ୍ଚରେ ଆପଣଙ୍କ ପବିତ୍ର ପଦନ୍ୟାସର ଚିହ୍ନ ପଢ଼ିବା ମୋତେ ଅଜଣା କିନ୍ତୁ ଆପଣଙ୍କ ଅକାଳ ତିରୋଧାନ ସମସ୍ତଙ୍କ ପ୍ରାଣରେ ଏକ ବିଳପିତ ଅଭୁଲା କାହାଣୀ । କାଳବୈଶାଖୀର ଝଙ୍କାରରେ ଆପଣଙ୍କ ଜୀବନ କୁସୁମ ମଉଳି ଗଲା ସତ, କିନ୍ତୁ ସେହି ଜୀବନର ସୌରଭ ଅଭୁଲା ଓ କାଳଜୟୀ । ଆପଣଙ୍କ ଅମ୍ଳାନ ଆତ୍ମା ଚିରସ୍ଥିର ଓ ଶାଶ୍ୱତ ।

ହେ ପୂଜ୍ୟମେବକ !

ଆପଣଙ୍କ କର୍ମମୟ ଜୀବନର ମୂଲ୍ୟାଙ୍କନ ପାଇଁ ମୋର ଭାଷା ପ୍ରତିହତ । ଆପଣଙ୍କ ତ୍ୟାଗପୂତ ଜୀବନ, ଉତ୍ସର୍ଗୀକୃତ ସେବାଧର୍ମ ଅନନ୍ୟ ସାଧାରଣ ।

ଆପଣଙ୍କ ବିଶଦ ଛବିମୂର୍ତ୍ତି, ମିଷ୍ଟବ୍ୟବହାର ଓ ଅନାବିଳ ବାତ୍ସଲ୍ୟର ପଟାନ୍ତର ନାହିଁ ।

ଜନତା ଜନାର୍ଦ୍ଦନର ସେହି ମହାନ୍ ସେବାଧର୍ମରେ ଦୀକ୍ଷିତ ଆପଣ ଏକ ମୂର୍ତ୍ତିମାନ ବିଗ୍ରହ ।

ରୁଗ୍ଣ, ନିରାଶ୍ରୟଙ୍କ ଭିକ୍ଷାପାତ୍ରରେ ଅକୁଣ୍ଠ ଦାନାର୍ପଣ କରି କଳ୍ପବଟ ତୁଲ୍ୟ ଚିରପୂଜ୍ୟ ।

ଅନେକ ସାହିତ୍ୟ ସୃଷ୍ଟିର ସ୍ରଷ୍ଟା ଓ ଦୃଶ୍ୟକାବ୍ୟର ଅଭିନେତା ଆପଣ ଥିଲେ କଳା ଓ ସଂସ୍କୃତିର ପୂଜାରୀ ।

ହେ ସଂଗ୍ରାମକେଶରୀ !

ସତ୍ୟ ଓ ନ୍ୟାୟ ପ୍ରତି ଅନୁରାଗୀ ଆପଣ ଜୀବନର ବିଭିନ୍ନ କ୍ଷେତ୍ରରେ ଅନ୍ୟାୟ ବିରୁଦ୍ଧରେ ଲମ୍ଫ ପ୍ରଦାନ କରି ସତ୍ୟର ମଶାଲ ଜାଳିବା ପାଇଁ ବତି ପରି ଜଳି ଯାଇଛନ୍ତି । ନିର୍ଭୀକ ସୈନିକ ତୁଲ୍ୟ କର୍ତ୍ତବ୍ୟର ରଣାଙ୍ଗନରେ ବିଜୟୀ ହୋଇଛନ୍ତି । ଆପଣ ଜନ୍ମମାଟିର ଉନ୍ନତିବିଧାନ ପାଇଁ ଜାତିଭାଇଙ୍କ ସହ ସସ୍ୱର ଓ ଶତମୁଖ ହୋଇ ଉଠିଛନ୍ତି । ଜୀବନର ଉନ୍ନତ ସୋପାନରେ ଅବସ୍ଥାପିତ ହୋଇମଧ୍ୟ ଆପଣ ନିଜର

ମୌଳିକତା ଓ ନିଜତ୍ୱ ହରାଇ ନାହାନ୍ତି । ଅଗ୍ନିରେ କନକ ଓ କର୍ପୂର ପରି ବିପଦର ଅନଳରେ ଆପଣ ଅଧିକ ଉଦ୍‌ଭାସିତ ଓ ଅଧିକ ସୁବାସିତ ହୋଇଛନ୍ତି ।

ହେ ପ୍ରଚଣ୍ଡ ସମୁଜ୍ଜ୍ୱଳ ପ୍ରତିଭା !

ଏ ଗ୍ରାମଭୂମିର ପୂଜାପାର୍ବଣରେ କର୍ମମୁଖର ମୁହୂର୍ତ୍ତିରେ ଗ୍ରାମବାସୀଙ୍କ ସହ ଆପଣ ଏକ ନୀର-କ୍ଷୀରର ରୂପାନ୍ତର । ଅନେକଙ୍କ ସହ ଏକ ହେବାର ବ୍ୟାକୁଳତା ଆପଣଙ୍କର ଏକାନ୍ତ ନିଜସ୍ୱ । ଦେବମନ୍ଦିରରେ, ପୁଷ୍କରଣୀର ତଟରେ, ଗ୍ରାମଦାଣ୍ଡରେ ଏବେ ବି ଆପଣଙ୍କ ପବିତ୍ର ପଦପାଂଶୁ ସୁସ୍ପଷ୍ଟ । ବୟସ୍କଙ୍କୁ ସମ୍ମାନଦେଇ ଗ୍ରାମବାସୀଙ୍କୁ ଆପଣାର କରିବା, ଗ୍ରାମବାହାରେ ସସ୍ନେହ ସମ୍ଭାଷଣ କରି ସୁ ସ୍ୱାଗତ କରିବା ଓ ସେମାନଙ୍କର ଅସମୟରେ ଯଥାଶକ୍ତି ସାହାଯ୍ୟ କରିବା ଆପଣଙ୍କ ମହତୀ ମହନୀୟତା ।

ଗ୍ରାମର ବିଭିନ୍ନ ଯାତ୍ରା ଉତ୍ସବକୁ ସଫଳ କରିବା ପାଇଁ ଆପଣଙ୍କ ବଳିଷ୍ଠ ଦିଗଦର୍ଶନ, ଉତ୍ସର୍ଗୀକୃତ କର୍ତ୍ତବ୍ୟ ନିଷ୍ଠା ଅବିସ୍ମରଣୀୟ । କହିଲେ ଅତ୍ୟୁକ୍ତି ହେବ ନାହିଁ— ବିଶେଷ କରି ଗ୍ରାମର ସାଂସ୍କୃତିକ ଚେତନାର ପ୍ରାଣ କେନ୍ଦ୍ର ପବିତ୍ର ଶୀତଳ ଷଷ୍ଠୀ ଓ ଶ୍ରୀ ଶ୍ରୀ ଠାକୁରଙ୍କର ବାଣ ଯାତ୍ରାକୁ ନିୟନ୍ତ୍ରଣ କରିବାର ମୁଖ୍ୟ ଦାୟିତ୍ୱ ଆପଣ ହିଁ ପରୋକ୍ଷରେ ସମାଧାନ କରି ଆସୁଥିଲେ । ଯଥା ସ୍ଥାନ ଓ କାଳରେ ଉପସ୍ଥିତ ହୋଇ ବାଣ ଯାତ୍ରାର ଅନେକ ସୁଖ ଦୁଃଖର ମୁହୂର୍ତ୍ତିରେ ନିଜକୁ ସଂଶ୍ଲିଷ୍ଟ କରି ପରିସ୍ଥିତିକୁ ନିଜର ଢ଼ଙ୍ଗ ବ୍ୟକ୍ତିତ୍ୱ ଦ୍ୱାରା ଆୟତ୍ତ କରିବା ସହ ସରଳ ସମାଧାନ କରି ପାରି ଥିବାରୁ ଗ୍ରାମବାସୀଙ୍କ ନିକଟରେ ଚିର କାଳ ଅବିସ୍ମରଣୀୟ ।

ହେ ସତ୍ୟର ପୂଜାରୀ !

ଜାତିବଂଶର ଉନ୍ନତି ବିଧାନ ଆପଣଙ୍କ ଜୀବନର ସଫଳ କାହାଣୀ । ଆପଣଙ୍କ ମୃତ୍ୟୁ ଆମପାଇଁ ସ୍ୱୀକାର୍ଯ୍ୟ ନୁହେଁ । ଆପଣ ଆଜି ବିଶ୍ରାମରତ । ଯଶ ଶରୀରରେ ଆଜି ସମସ୍ତଙ୍କ ମନ ମନ୍ଦିରରେ ଆପଣ ବିଦ୍ୟମାନ ।

ସଂସାର ଜାଣେ— ନଳିନୀ ଦଳଗତ ଜଳଗତ୍ ତରଳମ୍
ତଦ୍‌ବତ୍ ଜୀବନ ମତିଶୟ ଚପଳମ୍

ତେଣୁ ହେ ସ୍ୱର୍ଗବାସୀ ଗତାତ୍ମା ସିଦ୍ଧ-ପୁରୁଷ, ଅଶ୍ରୁଳ ନୟନରେ ଅର୍ପିତ ଭକ୍ତି କୁସୁମାଞ୍ଜଳିକୁ ଗ୍ରହଣ କରନ୍ତୁ । ଆଶୀର୍ବାଦ କରନ୍ତୁ, ଆପଣଙ୍କ ଅନୁପସ୍ଥିତିରେ ଯେପରି ସେହି ପବିତ୍ର ବାଣ ଯାତ୍ରାରେ ଅଗ୍ନି ଉତ୍ସବ ଭାତୃତ୍ୱ ଓ ଏକତ୍ୱର ପ୍ରତୀକ ହେଉ ଓ ଆମ୍ଭେ ସର୍ବେ ଆପଣଙ୍କ ପବିତ୍ର ଉପସ୍ଥିତିକୁ ଅନୁଭବ କରୁ ।

॥ ଇତି ॥

ଆପଣଙ୍କର ଗୁଣମୁଗ୍‌ଧ
ପରୀକ୍ଷିତ



ବୀର ନରସିଂହପୁର, ପୁରୀ

# ଓମ୍ସା

## ପ୍ରଫେସର ଶିତିକଣ୍ଠ ମିଶ୍ର

ଡ଼ଃ ବୈଦ୍ୟନାଥ ମିଶ୍ର ଓ ଡ଼ଃ ହେମଲତା ମିଶ୍ରଙ୍କର ମୁଁ ପୁତ୍ର । ସ୍କୁଲରେ ପଢ଼ିଲା ବେଳଠାରୁ ଓମ୍ସା ଶବ୍ଦଟି ମୁଁ ଘରେ ବହୁବାର ଶୁଣିଛି । ବାପାଙ୍କ, ଖୁଡ଼ି ଏବଂ ତାଙ୍କ ସାଙ୍ଗ ସାଥିମାନେ କଥାବାର୍ତ୍ତା ହେଉଥିବା ବେଳେ ଏ ଶବ୍ଦଟିର ବହୁତ ବ୍ୟବହାର ହୁଏ । ପ୍ରଥମେ ମୁଁ ଭାବୁଥିଲି ଓମ୍ସା ଏକ ଡାକ୍ତରୀ ଶବ୍ଦ । ଅପରେସନ୍, ଏକ୍ସରେ ବା କାର୍ଡ଼ିଓ ଗ୍ରାଫ ଭଳି । ପରେ ଜାଣିଲି ଏହା ଡାକ୍ତରୀ ଶବ୍ଦ ନୁହେଁ, **Orissa Medical Services Association** ର ସଂକ୍ଷେପ କରଣ ହିଁ ହେଉଛି "O M S A" । ଓଡ଼ିଶାର ସମସ୍ତ ସରକାରୀ ଡାକ୍ତର, ଓମ୍ସାର ସଭ୍ୟ । ସମୟ କ୍ରମେ ଅନେକ ଡାକ୍ତର ଏହି ସଂଘର କର୍ମକର୍ତ୍ତା ହୋଇଛନ୍ତି । ସଭାପତି, ଉପସଭାପତି, ସଂପାଦକ ଓ ଯୁଗ୍ମ ସଂପାଦକ ଇତ୍ୟାଦି । ସେମାନଙ୍କ ମଧ୍ୟରୁ ଡାକ୍ତର ବୈଦ୍ୟନାଥ ମିଶ୍ର କିଛି ସମୟ ପାଇଁ ଏହି ପଦବୀ ମଣ୍ଡନ କରିଥିଲେ । ଏଇଆଡ଼େ ମନକୁ ପ୍ରଶ୍ନ ଆସୁଛି ସେ ନେଇ ଏତେ ଆଲୋଚନା ଓ ଶେଷରେ ଏକ ପ୍ରବନ୍ଧ ଲେଖିବାର ଆବଶ୍ୟକତା କଣ ?

ଓମ୍ସା ଥିଲା ବାପାଙ୍କର ମାନସ ସନ୍ତାନ । ତାଙ୍କ ପୁଅ ପୁତୁନ୍ ଜନ୍ମ ହେବାର ବହୁ ପୂର୍ବରୁ ଓମ୍ସାର ସୃଷ୍ଟି । ଖୁଡ଼ି ୧୯୮୮ ରେ ସରକାରୀ ଚାକିରୀରୁ ସ୍ୱେଚ୍ଛାକୃତ ଅବସର ନେବାପରେ ସ୍ୱାଭାବିକ ଭାବରେ ଓମ୍ସା ଠାରୁ ଦୂରେଇ ଯାଉଥିଲେ । ମାତ୍ର ବାପାଙ୍କ ସରକାରୀ ଚାକିରୀ ଛାଡ଼ିବା ଲାଗି, ଯଦିଓ ମୃତ୍ୟୁ ପୂର୍ବରୁ ମନସ୍ଥ କରିଥିଲେ । ଓମ୍ସା ଠାରୁ ବିଦାୟ ନେବେ ବା ଆଇନତଃ ତାଙ୍କୁ ନେବାକୁ ପଡ଼ିବ, ଏକଥା କେବେ ଭାବିଥିବେ ସେ ବିଶ୍ୱାସ ମୋର ଆସୁନି ।

ବାପାଙ୍କ ସମ୍ବଲପୁରରେ ଯକ୍ଷ୍ମାରୋଗ ବିଶେଷଜ୍ଞ ଥିଲା ବେଳେ, ଓମ୍ସାର ସେକ୍ରେଟାରୀ ଓ ପରେ ଉପସଭାପତି ହେଲେ । ସମ୍ବଲପୁରରେ ଚାକିରୀ ଓମ୍ସାର ଅଧିକାଂଶ କାର୍ଯ୍ୟ କଟକ - ଭୁବନେଶ୍ୱରରେ । ପ୍ରତି ପନ୍ଦର ଦିନରେ ଥରେ ଭୁବନେଶ୍ୱର ଆସିବା ଦରକାର ହେଉଥିଲା । କେତେବେଳେ କମିଟି ମିଟିଙ୍ଗରୁ ସ୍ୱାସ୍ଥ୍ୟ ସଚିବଙ୍କ ସହ ଆଲୋଚନା । ଅନ୍ୟବେଳେ ଧର୍ମଘଟ ପାଇଁ ଯୋଜନା ବା

ସ୍ୱାସ୍ଥ୍ୟ ସଚିବ ସହ ଆଳାପ ଆଲୋଚନା- ଭୁବନେଶ୍ୱରରେ ଜାମିତ ଅନେକ । ଏଠାରେ ସେକ୍ରେଟାରୀଙ୍କର ଉପସ୍ଥିତି ନିତାନ୍ତ ଦରକାର । ତାମିଦ୍ଧ ଜଣଙ୍କ ପାଖରୁ ଜଣକ ପାଖକୁ ଯିବା ପାଇଁ ସଦାବେଳେ ଗାଡ଼ିମଟର୍ ସୁବିଧା ବି ନ ଥାଏ । ପ୍ରତିଥର ଅନ୍ୟ ସମ୍ବଲପୁରରୁ ନିଜ କାରରେ ଆସିବା ମଧ୍ୟ ସଂଭବ ହୁଏନି । ଆମ ପୁରୁଣା ଲୁନାଟି ସେ ସମୟର ଏକମାତ୍ର ସହାୟ ଥିଲା । ଭୁବନେଶ୍ୱର ଷ୍ଟାଣ୍ଡରେ ବୁଲିବାତ ମାମୁଲି କଥା । ପୁରୀ, କଟକ ଏ ପରିକି ଢେଙ୍କାନାଳ ମଧ୍ୟ ଏକାଠି ଯାଇଛୁ । କକେଇଙ୍କର ଦୁର୍ବଳ ସ୍ୱାସ୍ଥ୍ୟ ମାତ୍ର ମନରବଳ ଅକଳନୀୟ । ପ୍ରଥମଥର ମୋତେ ଦେଖି କେତେଥର ତାଙ୍କ ବନ୍ଧୁମାନେ ପଚାରିବାର ଶୁଣିଛୁ — ଏ ବାବୁ କଣ ନରେଶ ଡ଼କ୍ଟର କକେଇ ଉତ୍ତର ଦିଅନ୍ତି " ନା ସେ ଡକ୍ଟର ନୁହେଁ, ଡକ୍ଟରେଟ କରୁଛୁ । ଅନେକ ଥର ସଭାସମିତିରେ ତାଙ୍କ ଭାଷଣ ଶୁଣିବାର ସୁଯୋଗ ମିଳିଛି କହିବାର ଶୈଳୀ ଅତି ଚମତ୍କାର । ମୁଁ ଜାଣିବାରେ ଅତି ଉଚ୍ଚ କୋଟୀର ବକ୍ତା ମାନଙ୍କ ମଧ୍ୟରୁ ସେ ଜଣେ । ଅକାଟ୍ୟ ଯୁକ୍ତି ତାଙ୍କ ବକ୍ତୃତାର. ସେ ଡ଼ାକ୍ତର ନ ହୋଇ ଅଧ୍ୟାପକ ହୋଇଥିଲେ ବା ଆଡ଼ଭୋକେଟ୍ ନ ହୋଇଥିଲେବି ଜଣେ ପେଶାଦାରୀ ବକ୍ତା ହୋଇ ପାରିଥାନ୍ତେ । କେବଳ ବକ୍ତୃତା ନୁହଁ ବହୁବାର ଓମ୍ମା ମିଟିଙ୍ଗରେ ଗତ୍ତ୍ୱା ମଧ୍ୟ ସେ କରିବାର ମୁଁ ଦେଖିଛି । ନିଜ ଲାଗି ନୁହେଁ । ଅନୁଷ୍ଠାନ ପାଇଁ ।

ସମ୍ବଲପୁର ହସ୍ପିଟାଲରେ ସେ ପ୍ରାୟ ଆଠ ବର୍ଷ ରହିଛନ୍ତି । ଶେଷ ତିନି ବର୍ଷ ଇଚ୍ଛା ବିରୁଦ୍ଧରେ ରହିବାକୁ ବାଧ୍ୟ ହୋଇଛନ୍ତି । ତତ୍କାଳୀନ ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ଯୁକ୍ତ ହେମାନନ୍ଦ ବିଶ୍ୱାଳ, ସମ୍ବଲପୁର ଜିଲ୍ଲାର, ପ୍ରତିନିଧି । ସେ ଚାହିଁଲେନି କକେଇଙ୍କୁ ଛାଡ଼ିବା ପାଇଁ ପରେ ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକ ସ୍ୱାସ୍ଥ୍ୟ ମନ୍ତ୍ରୀ ହେଲା ପରେବି ତାଙ୍କର ବଦଳି ହେଲାନି । ବୋଧହୁଏ ମନ୍ତ୍ରୀଙ୍କର ନିଜ ଇଚ୍ଛାରେ ନୁହେଁ, ସମ୍ବଲପୁର ଜନସାଧାରଣଙ୍କ ପ୍ରବଳ ଦାବୀ ଯୋଗୁଁ ତାଙ୍କର ବଦଳି ହୋଇ ପାରୁ ନ ଥିଲା । ୧୯୮୮ ପ୍ରଥମ ଭାଗରେ ଖୁଡ଼ିଙ୍କର ପ୍ରମୋସନ ହୋଇ ପୁରୀ ଜିଲ୍ଲାକୁ ବଦଳି ହେଲା ଖୁଡ଼ି ପୁରୀ ଆସିବାର ଛ ମାସ ପରେ କକେଇ ଦ୍ୱିତୀୟ ବାର ପାଇଁ ପୁରୀ ହସ୍ପିଟାଲକୁ ଆସିଲେ । କକେଇ ପୁରୀ ଆସିବାର ଦୁଇମାସ ହୋଇଥାଏ । ସେ ଦିନ ଥିଲା ୨୨ ସେପ୍ଟେମ୍ବର ୧୯୮୮ । ମୁଁ ଭୁବନେଶ୍ୱର ଖ୍ରେଟାରୀ କ୍ଲବର ଏକ ସଭାରେ ବସିଥିଲି । ମୋ ସାନଭାଇ ଆସି ଖବର ଦେଲା । ଖୁଡ଼ି ଫୋନ୍ କରିଥିଲେ । କଣ ଜରୁରୀ କାମ ଅଛି । ଶୀଘ୍ର ଆସ । ଏକାଠି ଦୁଇ ଭାଇ ଫେରି, ପୁରୀକୁ ଫୋନ କଲୁ । କକେଇ ଧରିଲେ । ତାଙ୍କ ଠାରୁ ଶୁଣିଲି— ସ୍ୱାସ୍ଥ୍ୟ ମନ୍ତ୍ରୀ କକେଇଙ୍କୁ ଫୋନ କରି କହିଛନ୍ତି ଯଦି ସେ ରାତି ୯ଟା ସୁଦ୍ଧା ତାଙ୍କ କାର୍ଯ୍ୟରେ ଯୋଗ ନ ଦିଅନ୍ତି, ତେବେ ତାଙ୍କୁ ଫୁଲବାଣୀ ବଦଳି କରାଯିବ । କାରଣ, ପୂର୍ବରୁ କଟକ, ଭୁବନେଶ୍ୱର ବା ପୁରୀ ହସ୍ପିଟାଲରେ ଡ଼ାକ୍ତରମାନେ ଓମ୍ସାର ସଭ୍ୟ ଥାଇ ମଧ୍ୟ ଷ୍ଟ୍ରାଇକ୍ କରୁନଥିଲେ । ଭୟ, କାଳେ ବଦଳି ହୋଇଯିବ । ମାତ୍ର ୨୧ - ୯ - ୧୯୮୮ରେ

ଓମ୍‌ସାର କାର୍ଯ୍ୟବନ୍ଦ ଆନ୍ଦୋଳନକୁ ସମର୍ଥନ କରିଥିବା ପୁରୀ ହସ୍‌ପିଟାଲର ଡାକ୍ତର ମାନେ ସାମୁହିକ ଛୁଟି ନେଇଥିଲେ । କିନ୍ତୁ ପୂର୍ବପରି ଭୁବନେଶ୍ୱର ଓ କଟକ ହସ୍‌ପିଟାଲର ଅଧିକାଂଶ ଡାକ୍ତର ଆନ୍ଦୋଳନରେ ଯୋଗ ଦେଇ ନ ଥିଲେ । ଶୁଣିବାକୁ ମିଳିଲା ପୁରୀ ହସ୍‌ପିଟାଲର କେହି ଜଣେ "ତରୁଣ ପଟ୍ଟନାୟକ" ସ୍ୱାସ୍ଥ୍ୟ ମନ୍ତ୍ରୀଙ୍କର ପ୍ରିୟପାତ୍ର ହେବା ଆଶାରେ କୁଆଡେ କହିଥିଲେ— ବୈଦ୍ୟନାଥ ମିଶ୍ର ଏ ଆନ୍ଦୋଳନରେ ସାରଥି । ସେତେବେଳେ କଳେଇ ଓମ୍‌ସାର କୌଣସି କର୍ମକର୍ତ୍ତା ନଥିଲେ । କେବଳ ଜଣେ ସଭ୍ୟ । ସେ ଆସିବା ପୂର୍ବରୁ ଏଠାରେ କେହିଏ ଆନ୍ଦୋଳନରେ ଯୋଗ ଦେଇ ନଥିଲେ । ଏବେ କାହିଁକି ସେମାନେ କରନ୍ତେ ? ମନ୍ତ୍ରୀଙ୍କର ଏ କଥା ଉପରେ ବିଶ୍ୱାସ ଆସିଗଲା ଏବଂ ସାଙ୍ଗେ, ସାଙ୍ଗେ ସେ ପୁରୀକୁ ଫୋନ୍‌ କରିଛନ୍ତି । ମାତ୍ର କଳେଇ ମନ୍ତ୍ରୀଙ୍କୁ ନମ୍ରଭାବରେ ସହ କହିଥିଲେ— ସାର୍‌ ଆପଣ ଯେ ପରି କଂଗ୍ରେସ ଅନୁଷ୍ଠାନ ବା ସରକାର ପାଇଁ କାର୍ଯ୍ୟ କରୁଛନ୍ତି, ମୁଁ ଠିକ୍‌ ସେହିପରି ଆମ ଅନୁଷ୍ଠାନ ( ଓମ୍‌ସା ) ପାଇଁ କାର୍ଯ୍ୟ କରୁଛି । ଏଣୁ ଅନୁଷ୍ଠାନକୁ " ବଡେଇ " କରି ମୁଁ ପାରିବିନି । ଫୋନରେ କଳେଇଙ୍କ ଠାରୁ ଉପରୋକ୍ତ ଖବର ଶୁଣିଲା ପରେ ବି ମୋର ବିଶ୍ୱାସ ହେଲାନି, ସରକାର ପ୍ରକୃତରେ କଳେଇଙ୍କୁ ପୁରୀ ଅସିବାର ମାତ୍ର ଦୁଇ ମାସ ପରେ ବଦଳି କରି ଦେବେ । ଏଣୁ ମୁଁ କଳେଇଙ୍କୁ କହିଥିଲି ଆପଣ ଚିନ୍ତା କରନ୍ତୁନି, ଦେଖିବା ସରକାର କଣ କରୁଛନ୍ତି । ମାତ୍ର ପରଦିନ ସକାଳୁ ଖବର ମିଳିଲା ସେହି ଦିନରେ କଳେଇଙ୍କର ଫୁଲବାଣୀ ବଦଳୀ ହୋଇ ଯାଇଥିଲା । ରାତି ଗୋଟିଏ ଡେରି ହେବ ଏ ନେଇ ସବୁ ଆଡକୁ ଟେଲିଗ୍ରାମରେ ଆଦେଶ ପଠା ହୋଇଛି । ଏ ଖବର ପାଇଲା ପରେ କଳେଇ ତାଙ୍କ ବନ୍ଧୁ ଆଡ୍‌ଭୋକେଟ ଜୟନ୍ତ ଦାସଙ୍କ ସହ ଆଲୋଚନା କରି ଠିକ୍‌ କଲେ-- ଏହି ଅନ୍ୟାୟ ଆଦେଶ ବିରୁଦ୍ଧରେ Orissa Administrative Tribunal ରେ କେଶ ତା ୨୭।୯।୮୮ରେ ଭୁବନେଶ୍ୱର ଆସି କଳେଇଙ୍କ ତରଫରୁ ଜୟନ୍ତ ବାବୁ କେଶ୍‌ ଫାଇଲ୍‌ କଲେ । ସେହିଦିନ ଘଣ୍ଟା ବେଳକୁ ଟ୍ରିବ୍ୟୁନାଲ ବଦଳି ଅର୍ଡର ଉପରେ ରହିତାଦେଶ ଜାରି କଲେ । ତିନିମାସ କେଶ୍‌ ଚାଲିବା ପରେ ୨ ଜାନୁୟାରୀ ୧୯୮୯ରେ ଟ୍ରିବ୍ୟୁନାଲ ସରକାରଙ୍କର ବଦଳୀ ଆଦେଶକୁ ବାତିଲ କଲେ । ଏହି ତିନିମାସ ଭିତରେ ଅନେକ ବନ୍ଧୁ ଆସି କଳେଇଙ୍କୁ ପ୍ରବର୍ତ୍ତାଇଛନ୍ତି---ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକଙ୍କୁ ଦେଖା କରି । ଅଯଥା ଅଶାନ୍ତିର ପରିସମାପ୍ତି ଘଟାଇବା ପାଇଁ । ମାତ୍ର ସେ ରାଜି ହେଲେନି । ବରଂ ଠିକ୍‌ କଲେ ଯଦି କେସ୍‌ରେ ହାରି ଯାଆନ୍ତି, ତେବେ ସ୍ୱେଚ୍ଛାରୁ (ସ୍ୱଇଚ୍ଛାରେ) ଅବସର ନେଇଯିବେ । ମାତ୍ର ମନ୍ତ୍ରୀଙ୍କ ଦ୍ୱାରସ୍ଥ ହେବେନି । କୋର୍ଟ ଯୁକ୍ତିରେ କଳେଇ ଜିତିଲେ । ମାତ୍ର ସରକାର ଓମ୍‌ସାର ସ୍ୱୀକୃତି ପ୍ରତ୍ୟାହାର କରିନେଲେ । ଏହା କଳେଇଙ୍କୁ ବାଧିଥିଲା ନିଶ୍ଚୟ । ହେଲେ ତାଙ୍କୁ ବେଶୀ ଦୁଃଖ ଦେଇଥିଲା ଯେଉଁଭଳି ଭାବରେ ସେଥର ଆନ୍ଦୋଳନର ପରିସମାପ୍ତି ଘଟିଲା । ଏହା ସମସ୍ତେ ଜାଣନ୍ତି । କିଛିଦିନ କଳେଇ ନୀରବ ରହିଲେ ।

'ଘା' ବୋଧେ ଶୁଖିଗଲା । ତାପରେ ପୁଣ୍ୟରେ ମିଟିଙ୍ଗ୍ କରି ସବୁ ବନ୍ଧୁମାନଙ୍କୁ ପୁଣି ଏକାଠି କରିବାକୁ ଚେଷ୍ଟା କଲେ । ସେଦିନ ଠିକ୍ ହେଲା ଦ୍ୱିତୀୟ ମିଟିଙ୍ଗ୍ କଟକରେ ହେବ ତା ୯ । ୧୬ । ୮୯ରେ । ସରକାରଙ୍କୁ ବାଧ୍ୟ କରାଯିବ ଓମ୍‌ସା ପୁଣି ତାର ସ୍ୱୀକୃତି ଫେରି ପାଇବ ।

ନଅ ତାରିଖ ଦିନ ସକାଳୁ ହସ୍ପିଟାଲର କାର୍ଯ୍ୟ ସାରି ବାଳବନ୍ଧୁ ଡକ୍ଟର ଜଗନ୍ନାଥ ମିଶ୍ରଙ୍କ ସହ କଟକ ବାହାରିଲେ 'ଓମ୍ ସା' ମିଟିଙ୍ଗକୁ । ଏହା ଥିଲା ଓମ୍‌ସା ପାଇଁ କକେଇଙ୍କ ଶେଷ ଯାତ୍ରା । ସେ ଆଉ ଘରକୁ ଫେରି ନାହାନ୍ତି । ଓମ୍‌ସାର ପୂର୍ବତନ ସଭାପତି ଡକ୍ଟର ଗୁଣନିଧି ଭୂୟାଁଙ୍କ ଭାଷାରେ "ସେଦିନ କଟକ ମେଡ଼ିକାଲ କଲେଜରେ ବାଦ ବିବାଦ ମଧ୍ୟରେ ଓମ୍‌ସାର ଯେଉଁ ମିଟିଙ୍ଗ ହେଲା ତାହା ଥିଲା ତାଙ୍କ ଦୃଢ଼ ସଂକଳ୍ପର ଫଳ । ତାଙ୍କ ଆଖି ଆଗରେ ଏକ ଯୁଗର ଅବସାନ ହୋଇ-ଗଲା । ସେଇ ଦୁଃଖରେ ସାଥିର କାନ୍ଧରେ ମଥା ରଖି ସବୁଦିନ ପାଇଁ ଓମ୍‌ସାର ପ୍ରାଣ ବୈଦ୍ୟନାଥ ଶୋଇ ପଡ଼ିଲେ । ଆଉ ସବୁଦିନ ପାଇଁ ଶୋଇ ପଡ଼ିଲା ତାଙ୍କ ମାନସ ସନ୍ତାନ—'ଓମ୍‌ସା' ।"

ସନ୍ଧ୍ୟାରେ ଘରକୁ ଫେରିଥିଲା ତାଙ୍କ ନିର୍ଜୀବ ଶରୀର । ପାଦ ପାଖରେ ବନ୍ଧୁ ଶୋକାକୁଳ ଜନତାଙ୍କ ମଧ୍ୟରେ ଥିଲେ ପୂର୍ବତନ ମନ୍ତ୍ରୀ ସହୃଦୟ ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକ— ଅନ୍ୟମାନଙ୍କ ସହିତ ତାଙ୍କ ମହାଯାତ୍ରାରେ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ଯିବା ପାଇଁ ।

— ❀ —

ଭୁବନେଶ୍ୱର


ROTARY
INTERNATIONAL
PURI
ROTARACT
CLUB
PURI.
INDIA
PRESIDENT
SECRETARY

ରୋଟାରିଆନ୍ ଡଃ ମିଶ୍ର

# ଡାକ୍ତର ବୈଦ୍ୟନାଥ ମିଶ୍ରଙ୍କ ସଂକ୍ଷିପ୍ତ ଜୀବନୀ

ପୁରୀ ଜିଲ୍ଲାର ବୀରନରସିଂହପୁର ଗ୍ରାମରେ ୧୯୪୨ ମସିହା ଅକ୍ଟୋବର ମାସ ଦୁଇ ତାରିଖ ଦିନ ଡାକ୍ତର ବୈଦ୍ୟନାଥ ମିଶ୍ର ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ପଣ୍ଡିତ ହରିହର ମିଶ୍ର ଓ ମାତାଙ୍କ ନାମ କମଳାଦେବୀ। ତେବେ ତାଙ୍କୁ ପିଲାବେଳୁ ତାଙ୍କ ଜେଜେଉ ବାପା ବଳଭଦ୍ର ମିଶ୍ର ଦତ୍ତପୁତ୍ର କରି ନେଇଥିଲେ।

ଡାକ୍ତର ହେମଲତା, ଡାକ୍ତର ମିଶ୍ରଙ୍କ ସହଧର୍ମିଣୀ। ଡାକ୍ତର ଦମ୍ପତିଙ୍କର ଦୁଇଟି ଝିଅ ଓ ଗୋଟିଏ ପୁଅ। ବଡ଼ ଝିଅ ଜୁଲି ରାଜନୀତି ବିଜ୍ଞାନରେ ଏମ୍.ଏ. କରିବାପରେ ସମ୍ପ୍ରତି ଭୁବନେଶ୍ୱରସ୍ଥ ମହର୍ଷି ମହାବିଦ୍ୟାଳୟରେ ଅଧ୍ୟାପିକା ରୂପେ ଅବସ୍ଥାପିତା। ସାନ ଝିଅ ମିଲି ସାମନ୍ତଚନ୍ଦ୍ରଶେଖର କଲେଜର ବି.ଏସ୍.ସି. ଛାତ୍ରୀ। ଏକମାତ୍ର ପୁଅ ପୁପୁନ୍ ପୁରୀ କନ୍‌ଭେଣ୍ଟ୍ ସ୍କୁଲରେ ସପ୍ତମ ଶ୍ରେଣୀରେ ଅଧୁନା ଅଧ୍ୟୟନରତ।

ଜଣେ କର୍ତ୍ତବ୍ୟନିଷ୍ଠ ଚିକିତ୍ସକ ଭାବରେ ସେ ସୁନାମ ଅର୍ଜନ କରିଥିଲେ। ତାଙ୍କପରି ସ୍ତ୍ରୀରୋଗ ବିଶେଷଜ୍ଞ ବିରଳ। ଧର୍ମପତ୍ନୀ ଡାକ୍ତର ହେମଲତା ତାଙ୍କର ଉପଯୁକ୍ତା ସହଧର୍ମିଣୀ ଏବଂ ସହକର୍ମିଣୀ ମଧ୍ୟ। ଗତବର୍ଷ ଡିସେମ୍ବର ୯ ତାରିଖ ଦିନ ଆକସ୍ମିକ ହୃଦ୍‌ରୋଗର ଶିକାର ହୋଇ ସେ କଟକରୁ OMSA ମିଟିଙ୍ଗ୍ ସାରି ଫେରୁଥିବା ବାଟରେ ପରଲୋକ ଗମନ କରିଥିଲେ।